ISSN: 2456-9194, Vol. II, Issue. II, Sept 2018




ପ୍ରତ୍ୟୟ
(Journal of Odia Language, Culture and Science)
JournalHomepage:http://cphfs.in/research.php




# ନିଆରା ଅନୁଭୂତିର ଅପୂର୍ବ କଳାକୃତି : ଦାଶରଥିଙ୍କ ସମଗ୍ର ଉପନ୍ୟାସ ସୃଷ୍ଟି

**ଡ. ପ୍ରଦୋଷ କୁମାର ସ୍ୱାଇଁ**
ସହକାରୀ ପ୍ରାଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ଓଡ଼ିଶା, କୋରାପୁଟ
E-mail: pradosh.cu@gmail.com

***ସଂକ୍ଷିପ୍ତ ପରିଚୟ** - ଔପନ୍ୟାସିକ ଦାଶରଥି ନନ୍ଦଙ୍କ ସମଗ୍ର ବୃତ୍ତିଗତ ଜୀବନ ବୈଷୟିକ ଜଗତରେ ଅତିବାହିତ ହୋଇଥିଲେ ବି କଳା, ସାହିତ୍ୟ ପ୍ରତି ଥିଲା ତାଙ୍କର ଅନେକ ଆକର୍ଷଣ । ସଂପ୍ରତି ଶ୍ରୀନନ୍ଦଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ ମୌଳିକ ସୃଷ୍ଟି ମଧ୍ୟରୁ 'ଏଇପଥ' , 'ଶହୀଦ ଲକ୍ଷ୍ମଣ ନାୟକ', 'ପଶୁରାଇଜ', 'କାହାଣୀ ଇନ୍ଦ୍ରାବତୀର', 'ଗଢିବାର ସ୍ୱପ୍ନ', 'ଦଣ୍ଡ ଧାରୀ', ଓ 'ଅସହାୟ ଭୀଷ୍ମ', 'ଚିରାପତ୍ର' ଭଳି ପ୍ରଭୃତି ଜୀବନ ଓ ଜଗତକୁ ମନଭରି ଭଲପାଉଥିବା ଏହି ସ୍ରଜନ ସାଧକ କେବେବି ପାଠକ ମନରେ କ୍ଷଣିକ ଉନ୍ମାଦନା କିମ୍ବା ଅବସର ବିନୋଦନ ପାଇଁ ସାହିତ୍ୟ ସର୍ଜନା କରିନାହାନ୍ତି । ଏହାଛଡ଼ା ବାକ୍ୟଗଠନ କୌଶଳ ଓ ଶବ୍ଦ ପ୍ରୟୋଗ ଚାତୁରୀ ତାଙ୍କ ଉପନ୍ୟାସର ଆଙ୍ଗିକ ସୌଷ୍ଠବକୁ ଉତ୍କର୍ଷ ପ୍ରଦାନ କରିଛି।*

***ପ୍ରମୁଖଶବ୍ଦାବଳୀ**-(Keywords) - ଦାଶରଥି ନନ୍ଦ, ଔପନ୍ୟାସିକ, ଅନ୍ଧବିଶ୍ୱାସ, ଦଣ୍ଡଧାରୀ*

ଉପନ୍ୟାସ ହେଉଛି ସାହିତ୍ୟର ଏକ ଅର୍ବାଚୀନ ସାରସ୍ୱତ କଳା । କାବ୍ୟ, କବିତା, ଗଳ୍ପ, ପ୍ରବନ୍ଧ ଭଳି ଉପନ୍ୟାସ ମଧ ଜୀବନ ସହିତ ସମ୍ପର୍କ ଖୁବ ନିବିଡ଼ । କିନ୍ତୁ ଉପନ୍ୟାସ ହିଁ କେବଳ ବାସ୍ତବ ଓ ପୂର୍ଣ୍ଣାଙ୍ଗ ଜୀବନର କାଳ୍ପନିକ ଗଦ୍ୟକାହାଣୀ। ଉପନ୍ୟାସରେ ଦୈନନ୍ଦିନ ଜୀବନର ଅନୁକୃତ ସମାଜର ବାସ୍ତବ ରୂପ ଓ ଲୋକଚରିତ୍ରର ନିଗୁଢ ଅଧ୍ୟୟନର ସନ୍ଧାନ ମିଳେ । ଉପନ୍ୟାସ ଦ୍ୱାରା ଆଧୁନିକ ମଣିଷର ଜୀବନକୁ ନିଚ୍ଛକ ଭାବେ ଉପଲବ୍ଧି ଓ ଉପଭୋଗ କରିହୁଏ । ତେଣୁ ଏହି ଉପନ୍ୟାସ କଳାକୁ ଆଧୁନିକ ଏପିକ୍ ବା ଜୀବନର ମହାକାବ୍ୟ କୁହାଯାଏ । ଉପନ୍ୟାସ ଗଦ୍ୟସାହିତ୍ୟର ଏଭଳି ଏକ ବିଭବ ଯେଉଁଥିରେ ଔପନ୍ୟାସିକର ଭାବାନୁଭୂତି, ଚିନ୍ତା, ଚେତନା ତଥା ଦୃଷ୍ଟି ଦର୍ଶନ ସ୍ୱଚ୍ଛନ୍ଦରେ ଅଭିବ୍ୟକ୍ତି ଲାଭ କରିଥାଏ । ଲେଖକର ବକ୍ତବ୍ୟ ଉପନ୍ୟାସ ମଧ୍ୟରେ ଜୀବନ୍ତ ହୋଇଉଠେ; ଯେତେବେଳେ ସେ ଲୋକ ଜୀବନ ସମ୍ପର୍କରେ ବ୍ୟକ୍ତିଗତ ଧାରଣାକୁ ରୂପଦିଏ । ସ୍ରଷ୍ଟା ଯେତେବେଳେ ଜନଜୀବନରୁ ହୋଇ ଗଣାଭିମୁଖି ହୁଏ, ସେତେବେଳେ ତାହାର ସୃଷ୍ଟି ହୁଏ କାଳଜୟୀ । ଯେଉଁ ଲେଖକ କେବଳ ନିଜ ପାଇଁ ଲେଖେ ସେ ନିଜ ରାଜ୍ୟ ଭିତରେ ଘୁରିବୁଲେ ମାତ୍ର । କିନ୍ତୁ କଥାକାର ଦାୟିତ୍ୱ ହେଉଛି ପାଠକ ସମୂହକୁ ନିଜ ସୃଷ୍ଟି ଆଡକୁ ଟାଣିଆଣିବା ଯଦ୍ୱାରା ପାଠକ ଓ ଲେଖକ ଏକାକାର ହୋଇଯାନ୍ତି । ଉଭୟଙ୍କର ଏକୀଭୂତ ଜୀବନାନୁଭୂତିର କଳାତ୍ମକ ଅଭିବ୍ୟକ୍ତି ହିଁ ଉପନ୍ୟାସ । ମୋଟାମୋଟି କହିବାକୁ ଗଲେ ଲେଖକଙ୍କ ଅନୁଭୂତିକୁ ସାର୍ବଜନୀନ କରିବା ଓ ଅନୁଭୂତିକୁ ଆପଣାର କରିବା ହେଉଛି ଔପନ୍ୟାସିକଙ୍କର କଳାଧର୍ମ । ସେହି ଜଣ ଜୀବନକୁ ନିଖୁଣ ଭାବେ ତୋଳି ଧରିଥିବା ଉତ୍ତର ସତୁରୀ ପର୍ଯ୍ୟାୟର କେତେଜଣ ବିଶିଷ୍ଟ କଥାକାର ମଧ୍ୟରେ କଥାଶିଳ୍ପୀ ଦାଶରଥି ନନ୍ଦ ଏକ ବହୁ ଚର୍ଚ୍ଚିତ ନାମ ।

ବୃତ୍ତିରେ ଜଣେ ଯନ୍ତ୍ରୀ ଥିଲେ ବି ସାରସ୍ୱତ ସାଧନା ଥିଲା ତାଙ୍କର ନିଶା । ଦୀର୍ଘ କର୍ମମୟ ଜୀବନର ପ୍ରତ୍ୟକ୍ଷ ଅନୁଭୂତି ପ୍ରତିଷ୍ଠାର ଯାଦୁକରୀ ସ୍ପର୍ଶରେ ସତେଯେପରି ଆତ୍ମପ୍ରକାଶ କରିଛି ସାହିତ୍ୟ ରୂପରେ । କେଉଁଠି ବି ଯାନ୍ତ୍ରୀକ ଜୀବନରେ କର୍କଶତା ଅଥବା ସୂକ୍ଷ୍ମ ନିଷ୍ଠୁରତାର ଭାବ ଅନୁଭୂତ ହୁଏନାହିଁ । ବରଂ ତାଙ୍କ ରଚନାର ପ୍ରତିଟି ପୃଷ୍ଠାରେ ଗଭୀର ମାନବୀୟ ସମ୍ବେଦନଶୀଳତାର ମନୋଜ୍ଞ ସ୍ପର୍ଶ ପ୍ରତ୍ୟେକ ପାଠକ ଉପଲବ୍ଧି କରନ୍ତି । ଶ୍ରୀନନ୍ଦଙ୍କ ପ୍ରତିଭା ଥିଲା ବହୁମୁଖୀ । ଏକାଧାରରେ ସେ ଜଣେ ମେଧାବୀ ଛାତ୍ର, କୁଶଳି ଯନ୍ତ୍ରୀ, ଦକ୍ଷ ସଂଗଠକ, ଚିନ୍ତାଶୀଳ ପ୍ରାବନ୍ଧିକ, ସମାଜ ନିଷ୍ଠ କଥାଶିଳ୍ପୀ ଓ ସର୍ବପରି ସାହିତ୍ୟକୁ ମନଭରି ଭଲପାଉଥିବା ଖାଣ୍ଟି ମଣିଷଟିଏ। ବାଲ୍ୟରୁ ସ୍ୱଷ୍ଟବାଦୀ ଥିବା ଶ୍ରୀ ନନ୍ଦଙ୍କ ଘଟଣା ବହୁଳ ଜୀବନ ଅନେକ ଘାତ ପ୍ରତିଘାତ ମଧ୍ୟରେ ଅତିବାହିତ ହୋଇଥିଲେ ମଧ କେବେ ବା କାହା ପାଖରେ ନିଜ ଆଦର୍ଶସହ ସେ ସାଲିସ୍ କରି ନାହାନ୍ତି । ମାନ, ସମ୍ମାନ ପ୍ରତିଷ୍ଠା ପୁରସ୍କାର ତଥା ସ୍ୱୀକୃତିର ମାୟା ମରୀଚିକା ପଛରେ ଧାଇଁ ଧାଇଁ ପଥହୁଡା ହୋଇଯିବା ସ୍ରଷ୍ଟାଟିଏ ନୁହନ୍ତି ଶ୍ରୀ ନନ୍ଦ, ବଂର ପଥଭ୍ରଷ୍ଟ ସମାଜକୁ ଆଦର୍ଶ ଓ ନିରାମୟ ଜୀବନଯାପନ କରିବା ପାଇଁ ତାଙ୍କ ସାହିତ୍ୟରେ ଅଛି ଅପୂର୍ବ ପ୍ରେରଣା । ସାହିତ୍ୟ ମାଧମରେ ସ୍ରଷ୍ଟାର ସାମାଜିକ ଦାୟିତ୍ୱବୋଧ ଖୁବ୍

ନିଖୁଣ ଭାବେ ତୁଲାଇ ପାରିଛନ୍ତି କଥାଶିଳ୍ପୀ ଇଂଜିନିୟର ଦାଶରଥି ନନ୍ଦ । ତାଙ୍କର କଥା ସାହିତ୍ୟ ସତେଯେପରି ପାଠକ ମନରେ ସୃଷ୍ଟିକରେ ଜୀବନ ଜିଇଁବାର ଅଭିବନ ଉନ୍ମାଦନା । ଆଧୁନିକ ଓଡ଼ିଆ ସାହିତ୍ୟ ହାହତାଶା, ଆତ୍ମଗ୍ଲାନି, ବ୍ୟର୍ଥତା ଓ ଘୋର ନୈରାଶ୍ୟବୋଧର ଅଡୁଆ ସୁତା ମଧ୍ୟରେ ଛନ୍ଦି ହୋଇ ବିଫଳ ଜୀବନର ବେସୁରା ଗଜଲ ଚାଲିଥିବାବେଳେ କଥାକାର ଶ୍ରୀନନ୍ଦଙ୍କ ପ୍ରତିଟି ସୃଷ୍ଟି ଆଶା ଓ ସମ୍ଭାବନାର ସଂଜିବନୀ ମନ୍ତ୍ର ଉଚ୍ଚାରିତ କରିଚାଲିଛି । ଦୀର୍ଘ ଚାରିଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଧରି ନିରବଚ୍ଛିନ୍ନ ଭାବେ ସାହିତ୍ୟ ସାଧନ କରିଆସିଥିବା ଏହି ଜୀବନବାଦୀ ସୃଜନଶିଳ୍ପୀଙ୍କ ଲେଖନୀରୁ ଅଦ୍ୟାବଧି ଜନ୍ମନେଇଛି ସାତଟି ଉପନ୍ୟାସ । ତିରିଶିରୁ ଉର୍ଦ୍ଧ୍ୱ ଗଳ୍ପ ଓ ଏକାଧିକ ବସ୍ତୁନିଷ୍ଠ ପ୍ରବନ୍ଧ । ବାସ୍ତବବାଦୀ ଦୃଷ୍ଟିକୋଣ ସ୍ୱକୀୟ କଥନଭଙ୍ଗୀ ଔପନ୍ୟାସିକ ଶ୍ରୀନନ୍ଦଙ୍କୁ ଓଡ଼ିଆ ଉପନ୍ୟାସ ଜଗତରେ ଆଣିଦେଇଛି ଏକ ସ୍ୱତନ୍ତ୍ର ପରିଚିତି । କଳ୍ପନା ନୁହେଁ ନିଛକ ବାସ୍ତବତା, ଆବେଗ ପ୍ରବଣତା ନୁହେଁ, ବ୍ୟବହାରିକତା ହିଁ ଦାଶରଥିଙ୍କ ଉପନ୍ୟାସର ଏକ ପ୍ରମୁଖ ବୈଶିଷ୍ଟ୍ୟ । ଛାତ୍ରବସ୍ଥାରୁ ହିଁ ଗଳ୍ପ ରଚନା କରିଆସୁଥିବା ଏହି କଥାକାର ଲେଖନୀ ଏଯାବତ୍ ଖୁବ୍ ସକ୍ରୀୟ ଓ ଚଳଚଞ୍ଚଳ । ଅବିଶ୍ରାନ୍ତ ଭାବେ ସାହିତ୍ୟର ନିରାଂଜନା କରି ଆସିଥିବା ଏହି ସୃଷ୍ଟିଶୀଳ ପ୍ରତିଭା ଆଦି ବୟସର ଅପରାହ୍ଣରେ ଉପନୀତ ସତ କିନ୍ତୁ ବାର୍ଦ୍ଧକ୍ୟର ଶୀଥିଳତା ତାଙ୍କ ସୃଜନ ସାଧନକୁ ମନ୍ଥର କରିପାରି ନାହିଁ । ଦୃଢ ଇଚ୍ଛାଶକ୍ତି ଅପୂର୍ବ ମନୋବଳ, ଅକ୍ଲାନ୍ତ ପରିଶ୍ରମ ତଥା ଦେଶ, ଜାତି ଓ ନିଜ ସମାଜ ପାଇଁ କିଛି କରିଯିବାର ପ୍ରବଣତା ହିଁ ସତେ ଯେଭଳି ଜରାଗ୍ରସ୍ତ ଏହି ମଣିଷ ଭିତରେ ଭରି ଦେଇଛି ଅପୂର୍ବ ଶକ୍ତି ଓ ସାମର୍ଥ୍ୟ ।

ଔପନ୍ୟାସିକ ଦାଶରଥି ନନ୍ଦ ପୂର୍ବତନ ଜୟପୁର ଗଡ଼ଜାତ ବା ବର୍ତ୍ତମାନ କୋରାପୁଟ ଜିଲ୍ଲା ପ୍ରମୁଖ ବାଣିଜ୍ୟ ନଗରୀ ଜୟପୁରଠାରେ ୧୯୪୨ ମସିହା ଜୁନମାସ ୧୨ ତାରିଖ ଏକ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ମାତା ୰ ଅମ୍ବିକା ଦେବୀ ଓ ପିତା ୰ ଗଙ୍ଗାଧର ନନ୍ଦଙ୍କର ସେ ହେଉଛନ୍ତି ସର୍ବକନିଷ୍ଠ ସନ୍ତାନ । କଥାକାର ଦାଶରଥିଙ୍କ ଜନ୍ମ ଲଗ୍ନବେଳକୁ ଭାରତର ମୁକ୍ତି ଆନ୍ଦୋଳନ ଚରମ ଅବସ୍ଥାରେ ଉପନୀତ ହୋଇସାରିଥିଲା । ସେହି ସମୟରେ ପ୍ରଜା ବତ୍ସଳ ଓ କଳାପ୍ରେମୀ ରାଜା ବିକ୍ରମଦେବ ବର୍ମା ଜୟପୁର ଗଡଜାତ ରାଜ୍ୟର ଶାସକ ଭାବେ ନିଯୁକ୍ତ ହୋଇ ସାରିଥିଲେ । ବିକ୍ରମ ଦେବଙ୍କ ନିଷ୍ଠାପର ଉଦ୍ୟମ ତଥା ସୁଶାସନ ବଳରେ ଜୟପୁର ଗଡଜାତ କଳା, ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥାଏ ଏଭଳି ଏକ ଶୁଭଙ୍କର ସମୟ ଖଣ୍ଡରେ ଐତିହ୍ୟସଂପର୍ଣ୍ଣ ନନ୍ଦ ବଂଶର ଉତ୍ତରଦାୟଦ ଭାବେ ଜନ୍ମିତ ଦାଶରଥିଙ୍କ ଶୈଶବ ଜୀବନ ଅତ୍ୟନ୍ତ ସୌହାର୍ଦ୍ଦପୂର୍ଣ୍ଣ ବାତାବରଣ ମଧ୍ୟରେ ଅତିବାହିତ ହୋଇଥିଲା । ପିତା ଗଙ୍ଗାଧର ନନ୍ଦ ସେ କାଳର ଜଣେ ଉଚ୍ଚଶିକ୍ଷିତ ଆଦର୍ଶ ଶିକ୍ଷିତ ଭାବେ ଯଥେଷ୍ଟ ସମ୍ମାନ ଅର୍ଜନ କରିଥିଲେ । ଦାଶରଥି ନନ୍ଦଙ୍କ ବାଲ୍ୟଶିକ୍ଷ୍ୟ ଗୁଣୁପୁରରୁ ପିତା ଗଙ୍ଗାଧରଙ୍କ ଶିକ୍ଷକତା କରିବା ସମୟରେ ଆରମ୍ଭ ହୋଇ ପରବର୍ତ୍ତୀ ସମୟରେ କୋଟପାଡଠାରେ ମାଧ୍ୟମିକ ଶିକ୍ଷା ସମାପନ କରିଥିଲେ । ୧୯୫୮ ମସିହାରେ ମେଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ କୃତକାର୍ଯ୍ୟ, ହେଲାପରେ ଜୟପୁର ସ୍ଥିତ ବିକ୍ରମ ଦେବ ମହାବିଦ୍ୟାଳୟର ଆଇ.ଏସ୍‌ସି ଶ୍ରେଣୀରେ ନାମ ଲେଖାଇଥିଲେ । ୧୯୬୦ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଅଧିନସ୍ତ ବୁର୍ଲା ବୈଷୟିକ ମହାବିଦ୍ୟାଳୟରେ ଅଧ୍ୟୟନ ପାଇଁ ଯୋଗଦିଅନ୍ତି । ସେଠାରୁ କୃତକାର୍ଯ୍ୟ ହେବାପରେ ଆରମ୍ଭ ହୁଏ ଶ୍ରୀନନ୍ଦଙ୍କ କର୍ମମୟ ଜୀବନ । ୧୯୬୫ ମସିହାରେ ସୁନାବେଡା ସ୍ଥିତ ହିନ୍ଦୁସ୍ଥାନ ଏରୋନୋଟିକ ଶୀଳ୍ପାନୁଷ୍ଠାନରେ ଜଣେ କନିଷ୍ଠ ଯନ୍ତ୍ରୀ ଭାବେ କିଛି ବର୍ଷ ପାଇଁ ଯୋଗ ଦିଅନ୍ତି । ପରେ ପରେ ଓଡ଼ିଶା ଲୋକସେବା ଆୟୋଗ ଦ୍ୱାରା ପରିଚାଳିତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଓଡ଼ିଶା ସରକାରଙ୍କ ସହକାରୀ ଯନ୍ତ୍ରୀ ଭାବରେ ଅବସ୍ଥାପିତ ହୋଇଥିଲେ । ଦୀର୍ଘ କର୍ମମୟ ଜୀବନର ପ୍ରତିଟି ପାହାଚରେ ମାନ, ସମ୍ମାନ, ପ୍ରତିଷ୍ଠା ପାଇବା ସହ ବିଭିନ୍ନ ଉଚ୍ଚ ପଦପଦବୀରେ କାର୍ଯ୍ୟ କରିବା ପାଇଁ ସୁଯୋଗ ଲାଭ କରିଥିଲେ। ୨୦୧୧ ମସିହା ଜଳସେଚନ ବିଭାଗର ସର୍ବୋଚ୍ଚ ଯନ୍ତ୍ରୀ ଭାବେ ଦକ୍ଷତାର ସହ କାର୍ଯ୍ୟ ନିର୍ବାହ କରିବ ଚାକିରିରୁ ସେବା ନିବୃତ୍ତ ହୋଇଥିଲେ । ଦାଶରଥି ନନ୍ଦଙ୍କ ସମଗ୍ର ବୃତ୍ତିଗତ ଜୀବନ ବୈଷୟିକ ଜଗତରେ ଅତିବାହିତ ହୋଇଥିଲେ ବି କଳା, ସାହିତ୍ୟ ପ୍ରତି ଥିଲା ତାଙ୍କର ଅନେକ ଆକର୍ଷଣ । ତେଣୁ ବ୍ୟସ୍ତବହୁଳ ବୃତ୍ତିଗତ ଜୀବନରୁ ଯେତେବେଳେ ବି କିଛି ସମୟ ଫୁରସତ୍ ପାଉଥିଲେ ସାହିତ୍ୟ ଆଲୋଚନା ତଥା ଲେଖା ଲେଖିରେ ନିଜକୁ ନିୟୋଜିତ କରିବାକୁ ଜୟପୁର ଭବାନିପାଟଣା, ଭୁବନେଶ୍ୱର ଓ ଯାଜପୁର ଭଳି ସ୍ଥାନରେ ବହୁ ନୂତନ ସାହିତ୍ୟାନୁଷ୍ଠନ ପ୍ରତିଷ୍ଠା କରିବା ସହ ଓଡ଼ିଶାର ବିଭିନ୍ନ ସାହିତ୍ୟ ସଂଗଠନ ଦ୍ୱାରା ଜଡ଼ିତ ମଧ୍ୟ ହୋଇଥିଲେ । ଏହାଛଡା ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି ଓ ରାଧାନାଥ ରଥଙ୍କ ଭଳି ଓଡ଼ିଶାର ବରିଷ୍ଠ ସାହିତ୍ୟିକ ବ୍ୟକ୍ତିତ୍ୱମାନଙ୍କ ସହ ପ୍ରତ୍ୟକ୍ଷ ସାନ୍ନିଧ ଶ୍ରୀନନ୍ଦଙ୍କ ସାହିତ୍ୟିକ ପ୍ରତିଭା ଯଥେଷ୍ଟ ପ୍ରଭାବିତ ଓ ପ୍ରଚୋଦିତ କରିଥିଲା । ତୁଳସୀ ଦୁଇପତ୍ରରୁ ବାସିଲାଭଳି ଛାତ୍ର ଜୀବନରେ ହିଁ ଏହି କୁଶଳୀ ଯନ୍ତ୍ରୀଙ୍କ ସାରସ୍ୱତ ପ୍ରତିଭାର ପରଚୟ ମିଳିସାରିଥିଲା । କୋଟପାଡ ପରିବର୍ତ୍ତିତ ସାମାଜିକ ବ୍ୟବସ୍ଥାକୁ ଲକ୍ଷ୍ୟକରି ୧୯୫୯ ମସିହାରେ ଦାଶରଥିଙ୍କ ଲେଖା ସୃଷ୍ଟି ହୋଇଥିଲା ପ୍ରଥମ କ୍ଷୁଦ୍ରଗଳ୍ପ 'ନଷ୍ଟନୀଡ'। ଏହା ତତ୍କାଳୀନ 'କଳିଙ୍ଗ' ପତ୍ରିକାର ପୃଷ୍ଠାମଣ୍ଡନ କରିବାସହ ପତ୍ରିକାର ସମ୍ପାଦକ ତଥା ସ୍ୱନାମଧନ୍ୟ ଓଡ଼ିଆ କଥାକାର ସୁରେନ୍ଦ୍ର ମହାନ୍ତିଙ୍କଠାରୁ ଉଚ୍ଛ୍ୱସିତ ପ୍ରଶଂସା ଲାଭ କରିଥିଲେ । ଜଣେ ନବାଗତ ସାହିତ୍ୟକଙ୍କ ପାଇଁ ଏହାଠାରୁ ବଡ ସୀକୃତି ବା ଆଉ କ'ଣ ଅଛି । ତା' ପରେ ସେ ଆଉ ପଛକୁ ଚାହିଁନାହାନ୍ତି । ଗୋଟିଏ ପରେ ଗୋଟିଏ ନିରବଚ୍ଛିନ୍ନ ଭାବେ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ରଚନା କରି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନିଜର ସ୍ଥିତି ଜାହିର କରନ୍ତି । ଅଧିକାଂଶ ସ୍ରଷ୍ଟା ସେମାନଙ୍କ ସାହିତ୍ୟିକ ଜୀବନର ପ୍ରାରମ୍ଭରେ ସାଧାରଣତଃ ରୋମାଣ୍ଟିକ ପ୍ରବଣତା ଥିବା ଆମେ ଲକ୍ଷ୍ୟକରୁ । କିନ୍ତୁ, ବିସ୍ମୟର କଥା ଦାସରଥି ନନ୍ଦଙ୍କ ରଚନାଗୁଡ଼ିକରେ ତରୁଣ ସୁଲଭ ଭାବପ୍ରବଣତା ଅଥବା ଉଚ୍ଛ୍ୱାସ ପ୍ରବଣତାକୁ ଲକ୍ଷ୍ୟ କରିହୁଏନାହିଁ । ସବୁଠି ସତେଯେପରି ନିଷ୍ଠୁର ବାସ୍ତବତାର ପଦଧ୍ୱନି । ଗଭୀର ସାମାଜିକ ଅଙ୍ଗିକାର ବୋଧକୁ ପ୍ରତିଳିଫଳିତ କରିଚାଲିଛି । ସଂପ୍ରତି ଶ୍ରୀନନ୍ଦଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ ମୌଳିକ ସୃଷ୍ଟି ମଧ୍ୟରୁ 'ଏଇପଥ' (୧୯୭୨), 'ଶହୀଦ ଲକ୍ଷ୍ମଣ ନାୟକ' (୧୯୭୭), 'ପଶୁରାଇଜ' (୧୯୭୭), 'କାହାଣୀ ଇନ୍ଦ୍ରାବତୀର' (୨୦୦୧), 'ଗଢିବାର ସ୍ୱପ୍ନ' (୨୦୦୩), 'ଦଣ୍ଡ ଧାରୀ' (୨୦୦୬), 'କ୍ରୀଡନକ' (୨୦୦୮-୯) ପ୍ରଭୃତି ସାତଟି ଉପନ୍ୟାସ ବ୍ୟତୀତ ଦୁଇଟି ଗଳ୍ପ ସଂକଳନ ଯଥା 'ଅସହାୟ ଭୀଷ୍ମ' (୨୦୦୪), 'ଚିରାପତ୍ର' (୨୦୧୦), ତାଙ୍କ ଅନନ୍ୟ କଥା କାରିଗରୀର ପରିଚୟ ବହନକରେ ଆଲୋଚ୍ୟ ପ୍ରବନ୍ଧରେ କଥାକାରଙ୍କ କେବଳ ସାତଟି ଉପନ୍ୟାସକୁ ସାମଗ୍ରିକଭାବେ ଆକଳନ କରିବା ପାଇଁ ସାମାନ୍ୟ ଉଦ୍ୟମ କରାଯାଇଛି ।

ପାଶ୍ଚାତ୍ୟ ଉପନ୍ୟାସ ସାହିତ୍ୟର ଜନ୍ମକାଳ ଅଷ୍ଟାଦଶ ଶତାବ୍ଦୀ ହେଲେ ହେଁ ଭାରତୀୟ ସାହିତ୍ୟରେ ଉପନ୍ୟାସର ଉନ୍ମେଷ ଘଟିଛି ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ । ଘୋର ତମସାଛନ୍ନ ମଧ୍ୟଯୁଗୀୟ ଧର୍ମାନୁଶାସନର ଆବରଣରୁ ନିଜକୁ ମୁକ୍ତକରି କ୍ରମେ ମଣିଷ ତା'ର ପାରିପାର୍ଶ୍ୱିକ ଅବସ୍ଥା, ସମାଜ ଓ ବ୍ୟକ୍ତିସହ ସଂପର୍କ ସ୍ଥାପନ କରିବାକୁ ଚେଷ୍ଟା କଲା । ଏହି ପରିବର୍ତ୍ତନ ସମାଜ ବ୍ୟବସ୍ଥା ମଧ୍ୟରେ ମଣିଷ ତା'ର ବ୍ୟକ୍ତି ସ୍ୱାତନ୍ତ୍ରତାର ପ୍ରତିଷ୍ଠା ପାଇଁ ଯେଉଁ ଉଦ୍ୟମ କଲା ସେଥିରୁ ହିଁ ଜନ୍ମନେଲା ଉପନ୍ୟାସ ଭଳି ଏକ ଅଭିନବ ସାହିତ୍ୟ କଳା । ଏ କଥା ସତ ଯେ ନଗର କୈନ୍ଦ୍ରିକ ସମାଜ ଓ ଶିକ୍ଷିତ ଗୋଷ୍ଠୀଙ୍କର ଆବିର୍ଭାବ ଉପନ୍ୟାସ ସୃଷ୍ଟିପାଇଁ କେତେକାଂଶରେ ସହାୟକ ହୋଇଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧବେଳକୁ ଆଧୁନିକତା ଆମ ସାହିତ୍ୟରେ ଅନୁପ୍ରବେଶ କରିସାରିଛି ସତ, କିନ୍ତୁ ଖଣ୍ଡିଏ ସାର୍ଥକ ଉପନ୍ୟାସ ପାଇବାପାଇଁ ଆମକୁ କିଛି ବର୍ଷ ଅପେକ୍ଷା କରିବାକୁ ପଡ଼ିଛି । ଓଡ଼ିଆ ଉପନ୍ୟାସର ମୂଳଦୁଆ ପଡ଼ିବା ପୂର୍ବରୁ ଭାରତର ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ବହୁ ଆଗରୁ ଏହାର ଶୁଭାରମ୍ଭ ହୋଇସାରିଥିଲା । ବଙ୍ଗଳାରେ ପ୍ରଥମେ ପ୍ରମଥ ନାଥଙ୍କ 'ନବବାବୁ ବିଳାସ' (୧୮୨୩) ଓ ପ୍ୟାରୀଚାନ୍ଦ ମିତ୍ରଙ୍କର 'ଆଲୋଲେର ଘରେ ଦୁଲାଲ୍' (୧୮୫୩), ତଥା ମରାଠୀ ଭାଷାରେ ପଦ୍ମିନୀଙ୍କ 'ଯମୁନା ପର୍ଯ୍ୟଟନ' (୧୮୫୭), ଏବଂ ମାଲାୟାଲାମ୍ ଭାଷାରେ ଅଷ୍ଟୁନି ଦୁଙ୍ଗୁଡ଼ିଙ୍କ ଲିଖିତ 'କୁନ୍ଦଲତା' (୧୮୮୩) ପ୍ରଭୃତି ଉପନ୍ୟାସ ଆମ 'ପଦ୍ମମାଳୀ' ରଚିତ ହେବା ପୂର୍ବରୁ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିସାରିଥିଲା । ସେ ଯାହାହେଉ ଉମେଶ ଚନ୍ଦ୍ରଙ୍କ ଦ୍ୱାରା ଉନ୍ମେଷ ଲଭିଥିବା ଓଡ଼ିଆ ଉପନ୍ୟାସ କଥାସମ୍ରାଟ ଫକୀରମୋହନଙ୍କ ଲେଖନୀରେ ସ୍ୱୟଂସଂପୂର୍ଣ୍ଣ ହେବା ସହ ଚରମ ଉତ୍କର୍ଷ ଲାଭ କରିଛି । ଓଡ଼ିଆ ଉପନ୍ୟାସର ପ୍ରାଥମିକ ପର୍ଯ୍ୟାୟରେ ଯେଉଁ ପରମ୍ପରା ପ୍ରଚଳିତ ଥିଲା, ତାର ବୈପ୍ଳବିକ ପରିବର୍ତ୍ତନ ଓ ନୂତନ ଆଭିମୁଖ୍ୟର ପ୍ରବର୍ତ୍ତନ କରି ଫକୀରମୋହନ ଆଧୁନିକ ଅଡ଼ିଆ କଥାସାହିତ୍ୟର ଅପ୍ରତିଦ୍ୱନ୍ଦୀ ସ୍ରଷ୍ଟାଭାବେ ନିଜର ସ୍ଥିତିକୁ ଜାହିର କଲେ । ଯଦ୍ୱାରା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ ଧାରା ଆହୁରି କ୍ଷୁଦ୍ର ଓ ତ୍ୱରାନ୍ୱିତ ହୋଇପାରିଥିଲା । ବହୁ ସୃଜନ ସାହିତ୍ୟର ଏହି ଅଭିନବ ବିଭବ ପ୍ରତି ସ୍ୱତଃ ଆକର୍ଷିତ ହୋଇ ଅଗଣିତ ପାଠକଙ୍କ ଶ୍ରଦ୍ଧାଭାଜନ ହୋଇପାରିଥିଲା । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଅପେକ୍ଷା ଶେଷାର୍ଦ୍ଧରେ ପାଶ୍ଚାତ୍ୟ ଚିନ୍ତାଚେତନା ଦୃଷ୍ଟିଦର୍ଶନ ତଥା ସାହିତ୍ୟ ମତବାଦକୁ କେନ୍ଦ୍ରକରି ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ମଧ୍ୟ ପ୍ରୟୋଗ ଓ ପରୀକ୍ଷା କରାଯାଇଛି । ବହୁ ଔପନ୍ୟାସିକ ଏହି ଗଦ୍ୟମହାକାବ୍ୟର ଉଭୟ ଆତ୍ମିକ ଓ ଆଙ୍ଗିକ କ୍ଷେତ୍ରରେ ପରିବର୍ତ୍ତନ ପାଇଁ ଯଥାସାଧ୍ୟ ପ୍ରଯତ୍ନ କରିଛନ୍ତି । ସେହି ପ୍ରଚେଷ୍ଟାରୁ ସୃଷ୍ଟି ହୋଇଛି ଉପନ୍ୟାସର ବିବିଧ ରୂପ । କେତେବେଳେ ଏହା ସାମାଜିକ, ରାଜନୀତିକ, ନୃତାତ୍ତ୍ୱିକ ଅଥବା ଆଞ୍ଚଳିକ ବିଷୟବସ୍ତୁକୁ ନେଇ ରୁଦ୍ଧିମନ୍ତ ତ ଆଉ କେତେବେଳେ ମନସ୍ତାତ୍ତ୍ୱିକ, ଚେତନାଧର୍ମୀ ଅଥବା ରହସ୍ୟଧର୍ମୀ ଭାବବସ୍ତୁକୁ ଆଧାର କରି ମଣିଷ ଓ ତା'ର ସମାଜର ପ୍ରତିନିଧିତ୍ୱ କରିଛି । ସ୍ୱାଧୀନତା ପୂର୍ବବର୍ତ୍ତୀ ଉପନ୍ୟାସ ସହିତ ଏବର ଉପନ୍ୟାସକୁ ତୁଳନା କଲେ ବହୁ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ସେ କାଳର ଉପନ୍ୟାସ ଥିଲା ସମାଜ ସଂସ୍କାରଧର୍ମୀ। ମଧ୍ୟଯୁଗୀୟ କୁସଂସ୍କାର, ଅନ୍ଧବିଶ୍ୱାସ ଓ ଧର୍ମାନ୍ଧତା ଭିତରେ ବୁଡ଼ି ରହିଥିବା ଆମ ସମାଜ ବ୍ୟବସ୍ଥାକୁ ଆଧୁନିକ ଚିନ୍ତାଚେତନା ଦ୍ୱାରା ଅଭିମନ୍ତ୍ରିତ କରାଇ ଆଦର୍ଶବାଦୀ ସମାଜର ପରିକଳ୍ପନା ଥିଲା ତତ୍କାଳୀନ ଉପନ୍ୟାସର ପ୍ରମୁଖ ଆଭିମୁଖ୍ୟ । ସମୟର ବିବର୍ତ୍ତନ ସହ ମଣିଷର ସାମାଜିକ ଜୀବନଶୈଳୀରେ ପରିବର୍ତ୍ତନ ପରିଲକ୍ଷିତ ହେଲା । ବିଶେଷ କରି ଦୁଇ ଦୁଇଟି ବିଶ୍ୱଯୁଦ୍ଧର ଭୟାବହ ପରିଣତି ମଣିଷର ପ୍ରାଚୀନ ମୂଲ୍ୟବୋଧ ଓ ଆତ୍ମପ୍ରତ୍ୟୟକୁ ଦୋହଲାଇ ଦେଲା ଫଳରେ ଯୁଦ୍ଧତ୍ତୋର ମଣିଷ ଭାଗ୍ୟ ଓ ଭଗବାନ ପ୍ରତି ସନ୍ଦିହାନ ହୋଇଉଠିଲା । କେଉଁ ପ୍ରାଚୀନ କାଳରୁ ମଣିଷ ମନରେ ଦାନା ବାନ୍ଧିଆସିଥିବା ଆଧାତ୍ମିକ ଚେତନା ପ୍ରତିହତ ହୋଇ କ୍ରମଶଃ ଐତିହ୍ୟ ପ୍ରୀତି ଓ ବ୍ୟକ୍ତିପ୍ରେମ ଜାଗ୍ରତ ହେଲା । ବୁର୍ଜୋୟା ସାହିତ୍ୟିକମାନେ ଜୀବନର ନୂଆ ପରିସ୍ଥିତି ପ୍ରତି ଅନଭିଜ୍ଞ ନଥିଲେ କିନ୍ତୁ ସମ୍ଭବତଃ ସେମାନେ ଆପଣାର ପ୍ରତିକ୍ରିୟା ଓ ଆପଣାର ମାନସିକ ଗଠନ ଅନୁସାରେ ପରଦେଶାନୁମୋଦିତ ଆଦର୍ଶବାଦୀ ଦୃଷ୍ଟିକୋଣ ପ୍ରକାଶ କରୁଥିଲେ । ନୈତିକତା ଓ ଆଦର୍ଶବାଦୀ ପ୍ରତି ଯୁବଗୋଷ୍ଠୀର ବିଶ୍ୱାସ କ୍ରମଶଃ ହ୍ରାସ ପାଇବାରେ ଲାଗିଲା । ଏହି ନୂତନ ଦୃଷ୍ଟିକୋଣ କେବଳ ଓଡ଼ିଆ ଉପନ୍ୟାସ ନୁହେଁ, ସାହିତ୍ୟର ପ୍ରତିଟି ବିଭାଗରେ ପ୍ରତିଧ୍ୱନିତ । ଆଧୁନିକ ସମାଜ ଅଭାବ, ଅନଟନ, ଦୁଃଖକଷ୍ଟ, ବ୍ୟର୍ଥତା, ବିଶୃଙ୍ଖଳା ଓ ନୈରାଶ୍ୟରେ ପରିପୂର୍ଣ୍ଣ । ତେଣୁ ସେଗୁଡ଼ିକରେ ଚିତ୍ର ଉତ୍ତର ପଚାଶ ଉପନ୍ୟାସରେ ପ୍ରତିଫଳିତ ହୋଇଛି । ଅବଶ୍ୟ ସେଗୁଡ଼ିକୁ ଦୂର କରି ଗୋଟିଏ ସୁନ୍ଦର ସମାଜ ଗଢିବାର ପ୍ରୟୋଗ ମଧ୍ୟ ସ୍ଥଳବିଶେଷରେ ସ୍ଥାନ ପାଇଛି । ଫ୍ରଏଡୀୟ ମନୋବିଜ୍ଞାନ ସାହାଯ୍ୟରେ ମଣିଷର ଅବଚେତନ ମନକୁ ପାଠକ ସମ୍ମୁଖରେ ଉନ୍ମୋଚିତ କରାଯାଇଛି । ଉପଭୋକ୍ତାବାଦୀ ସମାଜର ବସ୍ତୁକୈନ୍ଦ୍ରିକତା ଓ ସ୍ୱାର୍ଥ ଲିପ୍ସୁ ମାନସିକତା ପ୍ରତି ଶାଣିତ କଟାକ୍ଷ କରିବାରେ ଔପନ୍ୟାସିକମାନଙ୍କ ଲେଖନୀ ଆଦୌ ସଂକୋଚ ପ୍ରକାଶ କରିନାହିଁ । ଏତଦ୍‌ଭିନ୍ନ ସ୍ୱାଧୀନତୋତ୍ତର ଭାରତବର୍ଷର ବହୁବିଧ ସାମାଜିକ, ରାଜନୀତିକ ତଥା ସମସ୍ୟା ଓ ତା'ର ସମାଧାନ ପ୍ରତି ଏକ ସଚେତନାତ୍ମକ ଦୃଷ୍ଟିକୋଣ ପୋଷଣ କରାଯାଇଛି । ତେଣୁ ସଂଶିତ କାଳର ସାହିତ୍ୟ ମଧ୍ୟଯୁଗୀୟ ସାହିତ୍ୟ ଭଳି ଆଉ ରସସ୍ରାବି ନ ହୋଇ ଗଭୀର ଜୀବନାନୁବାଦୀ ହୋଇଉଠିଛି ।

ସମାଜ ଓ ସମୟ ଏହି ପରିବର୍ତ୍ତିତ ଧାରା ସହ ତାଳ ଦେଇ ଉତ୍ତର ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଯେଉଁ କେତେଜଣ ଯଶସ୍ୱୀ ଔପନ୍ୟାସିକ ଦେଶ, ଜାତି ଓ ସମାଜ ଗଠନ ପାଇଁ ଆପଣା ଲେଖନୀମୁନକୁ ସକ୍ରିୟ ରଖିଥିଲେ, ତନ୍ମଧ୍ୟରୁ କଥାକାର ତଥା ଔପନ୍ୟାସିକ ଦାଶରଥି ନନ୍ଦ ଏକ ସ୍ମରଣୀୟ ପ୍ରତିଭା । ଗତ ଶତାବ୍ଦୀର ସପ୍ତମ ଦଶନ୍ଧିର ପ୍ରାରମ୍ଭରୁ ଏହି କଥାଶୀଳ୍ପିଙ୍କ ଗାଳ୍ପିକ ଜୀବନ ଶୁଭାରମ୍ଭ ହୋଇଥିଲେ ହେଁ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଅଷ୍ଟମ ଦଶନ୍ଧିବେଳକୁ ଜଣେ ଔପନ୍ୟାସିକ ଭାବେ ଆବିର୍ଭୂତ ହୁଅନ୍ତି ୧୯୭୨ ଖ୍ରୀଷ୍ଟାବ୍ଦରେ ଔପନ୍ୟାସିକ ଶ୍ରୀନନ୍ଦ 'ଏପଥ' ଉପନ୍ୟାସ ରଚନାକରି ଓଡ଼ିଆ ଉପନ୍ୟାସ ଜଗତରେ ଖୁବ ସନ୍ତର୍ପଣତାର ସହ ପଦାର୍ପଣ କରନ୍ତି । ଅଶିଦଶନ୍ଧିର ପ୍ରାରମ୍ଭରୁ ଉପନ୍ୟାସ ରଚନା କରିଆସିଥିବା ଏହି ସୃଷ୍ଟିସ୍ରାବି ପ୍ରତିଭା ଅଦ୍ୟାବଧି ବେଶ୍ ଚଳଚଞ୍ଚଳ । ଶ୍ରୀ ନନ୍ଦଙ୍କ ଦ୍ୱାରା ରଚିତ ସମସ୍ତ ଉପନ୍ୟାସର କଥାବସ୍ତୁ ବିଂଶ ଶତାବ୍ଦୀର ଭାରତ ତଥା ଓଡ଼ିଶାର ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ପ୍ରେକ୍ଷାପଟ୍ଟ ଉପରେ ପର୍ଯ୍ୟବସିତ । ତାଙ୍କର କିଛି ଉପନ୍ୟାସରେ ପରାଧୀନ ଭାରତର କରୁଣ ରାଗିଣୀ ତଥା ମୁକ୍ତି ଆନ୍ଦୋଳନ ଉଦାତ୍ତ ଉଚ୍ଚାରଣ ଶୁଣାଯାଉଥିବା ବେଳେ ଆଉ କିଛି ଉପନ୍ୟାସରେ ସ୍ୱାଧୀନ ଭାରତର ସ୍ୱପ୍ନଭଙ୍ଗ ଅଥବା ନବଭାରତର ନିର୍ମାଣ ପାଇଁ ଆଶା ଓ ସମ୍ଭାବନାର ଅସରନ୍ତି ସ୍ୱପ୍ନ ଜାଗରିତ ହୋଇଛି । ଦାଶରଥି ନନ୍ଦଙ୍କ ପ୍ରଥମ ଉପନ୍ୟାସ 'ଏପଥ' ସ୍ୱାଧୀନତୋତ୍ତର ଭାରତୀୟ ଜାତୀୟ ଜୀବନରେ ପରିଲକ୍ଷିତ ଶିକ୍ଷିତ ବେକାର ସମସ୍ୟା, କଳ୍ପଟ ଖାଦ୍ୟ ସମସ୍ୟା ସହ ଅଦୂରଦର୍ଶୀ ବିଫଳ ସରକାରୀ ଯୋଜନା ଜନିତ ଜଟିଳ ସମସ୍ୟାର ଚିତ୍ର

ଏବଂ ଏହି ଗୁରୁତର ପ୍ରତିବନ୍ଧକଗୁଡ଼ିକ ସମାଧାନର ଆଶାଜନକ ସକାରାତ୍ମକ ବୈଷୟିକ ପନ୍ଥା କିଭଳି ବ୍ୟବହାର କରାଯାଇ ପାରିବ ତାର ଏକ ସୁନ୍ଦର ଚିତ୍ର ଦାଶରଥି ନନ୍ଦଙ୍କ 'ଏଇପଥ' ଉପନ୍ୟାସରେ ସୁପରିକଳ୍ପନା କରାଯାଇଛି । ଏଭଳି ଏକ ବୈଷୟିକ ବିଷୟବସ୍ତୁକୁ ନେଇ ଉପନ୍ୟାସ ପରିକଳ୍ପନା କରି ତନ୍ମଧ୍ୟରୁ କଥା କାରୀଗରିର କାଉଁରୀ ସ୍ପର୍ଶରେ କମନୀୟ କରି ଗଢି ତୋଳିବା ପଛରେ ଦାଶରଥିଙ୍କ ଅମ୍ଳାନ ପ୍ରତିଭା ହିଁ ବିଦ୍ୟମାନ । ଆଲୋଚ୍ୟ ଉପନ୍ୟାସ ସମ୍ବନ୍ଧରେ ଲେଖକଙ୍କ ମନ୍ତବ୍ୟ ହେଲା: "ଏଇ ଖାଲି ଗୋଟିଏ ଗତାନୁଗତିକ କାହାଣୀ ନୁହେଁ । ଲେଖକ ଗୋଟିଏ ଧାରଣାପ୍ରତି ଯେମିତି Committed ଯେ ଉପନ୍ୟାସ ବିଳାସ ପାଇଁ ଆନନ୍ଦ ଯୋଗାଇବ ନାହିଁ, ଅବସର ବିନୋଦନ ପାଇଁ ଉପାଦାନ ହେବ ନାହିଁ ତା'ର ଗୋଟିଏ ସ୍ପଷ୍ଟ ବାଣୀଥିବ ।"(ରଚନା ସମଗ୍ର, ପୂର୍ବଭାଷ, ପୃ.୩୫)

ସ୍ୱାଧୀନ ଭାରତର ନୂତନ ଶିକ୍ଷାପଦ୍ଧତି ଯୁବଗୋଷ୍ଠୀଙ୍କୁ ସ୍ୱାବଲମ୍ବି କରିବା ପରିବର୍ତ୍ତେ ଚାକିରି ସର୍ବସ୍ୱ କରିବାରେ ଲାଗିଲା । ଶିକ୍ଷିତ ସଂପ୍ରଦାୟ ମଧ୍ୟରେ ଚାକିରି ଖଣ୍ଡେ ପାଇବା ପାଇଁ ଅଦ୍ଭୁତ ପ୍ରକାର ପ୍ରତିଯୋଗିତା ଓ ପ୍ରତିଦ୍ୱନ୍ଦ୍ୱା ପରିଲକ୍ଷିତ ହେଲା । ଏପରିକି ଚାକିରି ନିମିତ୍ତ ଅର୍ଥ, କ୍ଷମତା ଓ ଅନୈତିକ ପନ୍ଥାର ବ୍ୟବହାର ମଧ୍ୟ କରିଗଲା । ଯେଉଁମାନେ କଳେବଳେ କୌଶଳେ ଏହି ପ୍ରତିଯୋଗିତାରେ ବାଜିମାରିନେଲେ, ସେମାନଙ୍କ ଜୀବନ ମାସିୟାରି ବେତନର ଯୋଗ ବିୟୋଗ ରୂପି ଅଙ୍କକଷା ମଧ୍ୟରେ ଆପଣା ଜୀବନକୁ ମନଭରି ଜିଇଁବା ପାଇଁ କଳ୍ପଲୋକରୁ ଅପହଞ୍ଚ ସ୍ୱପ୍ନମାନଙ୍କୁ ସାଉଁଟିବାରେ ମଜଗୁଲ ରହିଲେ । ଏହି ଘୋଡା ଦୌଡରୁ ବାଦ୍ ପଡ଼ିଥିବା ଅବଶିଷ୍ଟ ଶିକ୍ଷିତଙ୍କ କଥା ନ କହିଲେ ଭଲ । ସତେ ଯେଭଳି ସେମାନେ ଘର ପରିବାର, ସମାଜ ପରିଜନ, ଦେଶ ଜାତିପାଇଁ ଅଶାନ୍ତ ଉଲ୍କାପିଣ୍ଡ । କକ୍ଷଚ୍ୟୁତ ହୋଇ ଲକ୍ଷ୍ୟହୀନ ଭାବେ ଘୁରି ବୁଲୁଛନ୍ତି ଆମ ସମାଜରେ । ଦେଶରୁ ପ୍ରଗତି ଦିଗରେ ସତେ ଯେଭଳି ଏମାନେ ଗୋଟିଏ ଗୋଟିଏ ପ୍ରତିବନ୍ଧକ । ସମାଜ ଆଖିରେ ଏମାନେ ଶିକ୍ଷିତ ବେକାରୀ ଭାବରେ ପରିଭାଷିତ ହୁଅନ୍ତି । ପରିବାରର ହତାଦର ସମାଜର ବିଦ୍ରୂପ ଏବଂ ନିଜର ଆତ୍ମଗ୍ଲାନି ଏହି ବେକାରୀ ଜୀବନର ଚଲାପଥକୁ ଆହୁରି ବନ୍ଧୁର ତଥା କଷ୍ଟସାଧ କରିପକାଏ । ତଥାପି ବର୍ତ୍ତିବାକୁ ହେବ । ଜୀବନର ସକଳ ପ୍ରତିବନ୍ଧକଙ୍କୁ ଏଡାଇ ସୁନେଲି ଭିବିଷ୍ୟତର ସ୍ୱପ୍ନ ଦେଖିବାକୁ ପଡିବ । ଶିକ୍ଷାକୁ କେବଳ ଚାକିରି ଉପାର୍ଜନର ସାଧନଭାବେ ଗ୍ରହଣ ନକରି ଆତ୍ମନିର୍ଭରଶୀଳତା ପାଇଁ ଆମକୁ ଯତ୍ନବାନ ହେବାକୁ ପଡ଼ିବ । ଆଲୋଚ୍ୟ ଉପନ୍ୟାସରେ ସେହିଭଳି ଏକ ନୂତନ ସଂଭାବନାର ମନ୍ତ୍ର ଉଚ୍ଚାରିତ କରାଯାଇଛି । ସ୍ୱାଧୀନ ଭାରତର ଅଗଣିତ ଶିକ୍ଷିତ ବେକାରୀମାନଙ୍କ ପାଇଁ ୧୯୭୦ ମସିହାରେ ଗଠିତ ଭଗବତୀ କମିଟିର ରିପୋର୍ଟ ଅନୁସାରେ ସେତେବେଳେ ସମଗ୍ର ଦେଶରେ ବେକାରଙ୍କ ସଂଖ୍ୟା ଥିଲା ୧୮.୭ ନିୟୁତ । ସେହିଭଳି ୧୯୭୩-୭୪ ମସିହାବେଳକୁ ଏ ଦେଶରେ ବୈଷୟିକ ଡିଗ୍ରୀଧାରି ବେକାରୀମାନଙ୍କ ସଂଖ୍ୟା ବିପୁଳ ମାତ୍ରାରେ ବୃଦ୍ଧି ପାଇଥିଲା । ଔପନ୍ୟାସିକ ନିଜେ ଜଣେ ଇଞ୍ଜିନିୟର ଥିବା ଯୋଗୁଁ ଅଗଣିତ ବେକାର ଇଞ୍ଜିନିୟର ଛାତ୍ରମାନଙ୍କ ପ୍ରତି ତାଙ୍କ ମନରେ ଥିଲା ଗଭୀର ସମବେଦନା । ଏଭଳି ଏକ ସମ୍ବେଦନଶୀଳ ପ୍ରସଙ୍ଗକୁ ଶାସନତନ୍ତ୍ରର ଦୃଷ୍ଟି ଆକର୍ଷଣ ପାଇଁ ନିଜ ଲେଖନୀକୁ ସକ୍ରିୟ କରିଥିଲେ । ତତ୍କାଳୀନ 'ସମାଜ' ସମ୍ବାଦପତ୍ରର ସୁନାମଧନ୍ୟ ସଂପାଦକଙ୍କ ତାତ୍ସଲ୍ୟଭରା ମନ୍ତବ୍ୟ ଶ୍ରୀନନ୍ଦଙ୍କ ସୃଜନ ଚେତନାରେ ଗଭିର ଆଲୋଡନ ସୃଷ୍ଟି କରିଥିଲା । "ଜଣେ ଇଞ୍ଜିନିୟର ବା ଡାକ୍ତର ସମାଜର ଉପକାରୀ ଜୀବ ହୋଇପାରେ । ସେ ଗଭୀର ଚିନ୍ତା ଓ ବାସ୍ତବିକ ଜ୍ଞାନ ପ୍ରସୂତ ଗଠନମୂଳକ ପ୍ରସ୍ତାବମାନ ଦେଇପାରେ କିନ୍ତୁ ସାହିତ୍ୟିକ ହେବା ଦୁଷ୍କର । ତାର ପ୍ରସ୍ତାବମାନ ଯୋଜନା ରିପୋର୍ଟ ଭଳି । ଯେତେ ଉଚ୍ଚକୋଟୀର ହେଲେ ମଧ୍ୟ ପ୍ରୋଜେକ୍ଟ ରିପୋର୍ଟ କେବେ କଣ ସାହିତ୍ୟ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହେବ?" (ଗଢିବାର ସ୍ୱପ୍ନ- ଦାଶରଥି ନନ୍ଦ)

'ଏଇପଥ' ଉପନ୍ୟାସ ସେହି ମାନସିକ ଆଲୋଚନାର ଏକ କଳାତ୍ମକ ଅଭିବ୍ୟକ୍ତି । ଦେଶର ଘଡିସନ୍ଧି ମୁହୂର୍ତ୍ତରେ ଏପରି ଏକ ପ୍ରାୟୋଗିକ କଥାବସ୍ତୁକୁ ନେଇ ଉପନ୍ୟାସ ରଚନା କରିବାକୁ ଯିବାବେଳେ ଔପନ୍ୟାସିକ ଶ୍ରୀନନ୍ଦଙ୍କୁ ଯଥେଷ୍ଟ ପ୍ରସ୍ତୁତି ସାବଧାନତା ଓ ଅଭିଜ୍ଞତା ଅର୍ଜନ କରିବାକୁ ପଡ଼ିଥିଲା । ନିଜ ବୃତ୍ତିଗତ ଜୀବନରେ ବ୍ୟାପକ ଅନୁଭୂତି, ସହକର୍ମୀ ବନ୍ଧୁମାନଙ୍କ ଅକୁଣ୍ଠିତ ପ୍ରେରଣା ସର୍ବୋପରି ବିଶିଷ୍ଟ ଓଡ଼ିଆ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ଯଥୋଚିତ ସାରସ୍ୱତ ଦିଗ୍‌ଦର୍ଶନ ଶ୍ରୀନନ୍ଦଙ୍କୁ ଏଭଳି ଏକ ସଫଳ ପ୍ରୟୋଗିକ ଉପନ୍ୟାସ ରଚନା ପାଇଁ ସହାୟକ ହୋଇଥିଲା । ଶଂସିତ କାଳର ଓଡ଼ିଆ ଉପନ୍ୟାସ ସ୍ୱାଧୀନ ଭାରତର ଅବକ୍ଷୟମୁଖୀ ରାଜନୀତିକ ମୂଲ୍ୟବୋଧ, ଦୁର୍ନିତୀଗ୍ରସ୍ତ ଦୁର୍ବଳ ଆର୍ଥନୀତିକ ବ୍ୟବସ୍ଥା ତଥା ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ଆଦି କ୍ଷେତ୍ରରେ ପରିଲକ୍ଷିତ ଅଭାବନୀୟ ଦୂରବସ୍ଥା ସମ୍ବନ୍ଧୀୟ ବିବିଧ ଜଟିଳ ସମସ୍ୟାକୁ ନେଇ ଖୁବ୍ ମୁଖର ହୋଇଉଠିଥିଲା କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଶାନ୍ତନୁ କୁମାର ଆଚାର୍ଯ୍ୟ, ମନୋଜ ଦାସଙ୍କ ଭଳି କତିପୟ ସ୍ରଷ୍ଟାମାନେ ସମାଜ ଓ ଦେଶ ଗଠନ ପାଇଁ ଯଥେଷ୍ଟ ଯତ୍ନବାନ ମଧ୍ୟ ଥିଲେ । ଏହି ସ୍ରଷ୍ଟାମାନଙ୍କ ଉପନ୍ୟାସଗୁଡ଼ିକରେ ସମକାଳୀନ ଭାରତରେ ବିବିଧ ସମସ୍ୟା କଳାତ୍ମକ ରୂପ ପାଉଥିଲା ସତ । ବୈଜ୍ଞାନିକ ଦୃଷ୍ଟିକୋଣ ଓ ପ୍ରାୟୋଗିକ ଅନୁଭୂତିର ଅଭାବ ଯୋଗୁଁ ସେଗୁଡ଼ିକର ବ୍ୟବହାରିକ ଦିଗଟି ଦୁର୍ବଳ ମନେ ହେଉଥିଲା । ଏଭଳିସ୍ଥଳେ ଶ୍ରୀନନ୍ଦଙ୍କ ସାରସ୍ୱତ ପ୍ରତିଭା ଉଭୟ ଦିଗ ମଧ୍ୟ ଚମତ୍କାର ସମନ୍ୱୟ ରକ୍ଷାକରି ବୈଷୟିକ ଉପନ୍ୟାସ ରଚନାର ଏକ ଅଭିନବ ପରମ୍ପରା ସୃଷ୍ଟି କରିପାରିଥିଲା । କଳା ପାଇଁ କଳାର ସୃଷ୍ଟି ନୁହେଁ, ଜୀବନ ପାଇଁ କଳାର ସୃଷ୍ଟି ଏହି ଆଦର୍ଶବୋଧ ଦ୍ୱାରା ଅନୁପ୍ରାଣିତ ଦାଶରଥି ନନ୍ଦଙ୍କ ସାରସ୍ୱତ ଜୀବନ ସମାଜ ଓ ଜଗତ ପ୍ରତି ସର୍ବଦା ଦାୟବଦ୍ଧ ଓ committed ମନେହୁଏ । ଏହି ଦୃଷ୍ଟିରୁ 'ଏଇପଥ' ଉପନ୍ୟାସର ଭାବପିଣ୍ଡ ସ୍ୱାଧୀନତା ପରବର୍ତ୍ତୀ ଭାରତର ତୀବ୍ର ବେକାରୀ ସମସ୍ୟା ଓ ତା'ର ସମାଧାନର ପନ୍ଥା ନିରୂପଣ ପୂର୍ବକ ଏକ ବିକଶିତ ସ୍ୱାବଲମ୍ବୀ ରାଷ୍ଟ୍ର ଗଠନ ପ୍ରତି ଅଭିପ୍ରେତ ହୋଇଥିବାରୁ ଏହା ଏକ ଘଟଣାପ୍ରଧାନ ସମସ୍ୟାମୂଳକ ସାମାଜିକ ଉପନ୍ୟାସର ମହତ୍ତ୍ୱ ଲାଭକରିଛି ।

ଆଲୋଚ୍ୟ ଉପନ୍ୟାସର କଥାବସ୍ତୁ କିଛି ସାଧାରଣ ମଧ୍ୟବିତ୍ତ ଶ୍ରେଣୀର ଉଚ୍ଚଶିକ୍ଷିତ ବେକାରୀ ଯୁବକମାନଙ୍କ ବିଭିନ୍ନ ସମସ୍ୟା ଓ ତା'ର ସମାଧାନ ପାଇଁ ସଂଘର୍ଷଗତ ଜୀବନ କାହାଣୀକୁ ନେଇ ପରିକଳ୍ପିତ । ଏଥିରେ ସାଧାରଣ ଉଚ୍ଚଶିକ୍ଷିତ ଏବଂ ଡାକ୍ତର, ଇଞ୍ଜିନିୟର ଭଳି ବୈଷୟିକ ଉପାଧି ଧାରି କେତେଜଣ ବେକାର ଯୁବକ ଆଉ କେତେଜଣ ଗ୍ରାମବାସୀଙ୍କୁ ନେଇ ଆତ୍ମନିଯୁକ୍ତି ନିମିତ୍ତ ଗୋଟିଏ ସମବାୟ ସଂସ୍ଥା ଗଠନ କରିଛନ୍ତି । 'ପ୍ରଗତି ଫାର୍ମ' ନାମରେ ସରକାରଙ୍କ ଦ୍ୱାରା ପଞ୍ଜିକୃତ ଏହ ଯୋଜନାର ସଫଳ ରୂପାୟନ ପାଇଁ କେନ୍ଦୁପଦର ଗ୍ରାମ ଅବବାହିକାରେ ପ୍ରବାହିତ ଚନ୍ଦ୍ରାବତୀ ନଈକୂଳକୁ ନିର୍ବାଚିତ କରିଛନ୍ତି ସେମାନଙ୍କର ସାଧନାର ପୀଠ ଭାବରେ । ନିଷ୍ଠାପର ଉଦ୍ୟମ, ଅକ୍ଲାନ୍ତ ପରିଶ୍ରମ, ନିରଳସ ସାଧନା ଓ ଶିକ୍ଷାଲବ୍ଧ ଜ୍ଞାନର ବୈଜ୍ଞାନିକ ଉପଯୋଗ ସେମାନଙ୍କ ଯୋଜନାକୁ ଦେଇଛି ଅପୂର୍ବ ସଫଳତା ।

ଶିକ୍ଷିତ ଓ ଅଶିକ୍ଷିତ ଯୁବଶକ୍ତିର ଏହି ଆନ୍ଦୋଳନାତ୍ମକ କର୍ମଧାରା କେବଳ ସେମାନଙ୍କୁ ସ୍ୱାବଲମ୍ବନଶୀଳ କରାଇଛି, ତାହା ନୁହେଁ ବରଂ ସେ ଅଞ୍ଚଳର କୃଷି, ଜଳସେଚନ, ପଶୁପାଳନ, ଶିକ୍ଷା, ସ୍ୱାସ୍ଥ୍ୟ ତଥା ଗମନା ଗମନ କ୍ଷେତ୍ରରେ ଆଣିଦେଇଛି ଅଭିନବ ପରିବର୍ତ୍ତନ ମଧ୍ୟ । ଅତଏବ ବେକାର ଯୁବଶକ୍ତିକୁ ଏକତ୍ର କରାଇ ଯୋଜନାବଧ ଭାବେ ସଦବିନିଯୋଗ କରାଗଲେ କେବଳ ବେକାରୀ ସମସ୍ୟାର ସମାଧାନ ହେବନାହିଁ, ତତ୍‌ସହିତ ଦେଶ ଓ ସମାଜର ସାମୁହିକ ବିକାଶ ମଧ୍ୟ ସମ୍ଭବ ହୋଇପାରିବ । ଶିକ୍ଷିତ ବେକାର ସମସ୍ୟାକୁ କେନ୍ଦ୍ରକରି ଆଲୋଚ୍ୟ ଉପନ୍ୟାସର ମୁଖ୍ୟ କଥାଭାଗ ପରିକଳ୍ପିତ ହୋଇଥିଲେ ହେଁ ଏଥିରେ ସମାଜ ଓ ବ୍ୟକ୍ତିଜୀବନ ପ୍ରତି ତୀବ୍ର କଟାକ୍ଷ ସହ ସମକାଳୀନ ଦୁର୍ନୀତି ଗ୍ରସ୍ତ ଶାସନ ବ୍ୟବସ୍ଥା, ଅବକ୍ଷୟୀ ରାଜନୀତିକ ମୂଲ୍ୟବୋଧ, କ୍ଷମତାଲିପ୍ସୁ ରାଜନ୍ୟ ନେତୃବର୍ଗଙ୍କୁ ରୁଗ୍ଣ ମାନସିକତା ଦେଶଭକ୍ତମାନଙ୍କ ପ୍ରତି ହତାଦର ତଥା ସର୍ବୋପରି ଏକ ଅସହିଷ୍ଣୁଙ୍କ ସାମାଜିକ ଜୀବନର ନିଛୁକ ଘଟଣାଗୁଡ଼ିକ ମୂଳ କଥାବସ୍ତୁ ସହ କାର୍ଯ୍ୟକାରଣ ରୀତିରେ ସମନ୍ୱୟ ରକ୍ଷା କରି ଗତିଶୀଳ ହୋଇଛି । ସୂକ୍ଷ୍ମ ତଥ୍ୟ ଓ ବିବରଣୀଭିତ୍ତିକ ଅର୍ଥ ଉପାର୍ଜନକାରୀ ଏକ ଯୋଜନାକୁ ନେଇ ଉକ୍ତ ଉପନ୍ୟାସର ଭାବବସ୍ତୁ ପରିକଳ୍ପିତ ହୋଇଥିଲେ ମଧ୍ୟ ଶ୍ରୀ ନନ୍ଦଙ୍କ ଅନନ୍ୟ ସାରସ୍ୱତ ପ୍ରତିଭାର ଯାଦୁକରି ସ୍ପର୍ଶରେ ରସୋତ୍ତୀର୍ଣ୍ଣ ହୋଇଉଠିଛି। ଆଲୋଚ୍ୟ ଉପନ୍ୟାସ ସମ୍ପର୍କରେ ଗୋପୀନାଥ ମହାନ୍ତିଙ୍କ ବଳିଷ୍ଠ ଅଭିମତ ହେଲା,"'ଏଇପଥ' ଉପନ୍ୟାସର ଲେଖକ ମୂଳରୁ ଜଣେ 'committed' ଲେଖକ । ତାଙ୍କର 'commitment' ତାଙ୍କ ନିଜ ଜୀବନ ଅନୁଭୂତି ପାଖରେ ସ୍ପଷ୍ଟ ଆନ୍ତରିକ । ତେଣୁ ଜଣକର ମର୍ମବାଣୀ ହେଲେବି ସେ ଗୋଟିଏ ସମୟର ଗୋଟିଏ ଶ୍ରେଣୀର ଶିକ୍ଷିତ ଯୁବକଙ୍କର ମର୍ମବାଣୀ, ଲେଖକ ନିଜେ ଇଞ୍ଜିନିୟରିଂ ବିଦ୍ୟାରେ ଉପାଧିଧାରୀ, ସୁସ୍ଥ, ସବଳ, ଶିକ୍ଷିତ ଯୁବକ, ପରାଧୀନ ଭାରତର ସନ୍ତାନ ଏମାନେ ନୁହଁନ୍ତି । ସ୍ୱାଧୀନ ଭାରତରେ ଏମାନଙ୍କ ଜନ୍ମ । ଏମାନେ ଚାହାନ୍ତି ।

୧. ପାଠପଢି ଯୋଗ୍ୟ ହେଲେ କାମ ମିଳିବା ଉଚିତ, ମିଳେ ନାହିଁ ।
୨. କାମ କରିବାକୁ ଶକ୍ତି ଅଛି, ବୁଦ୍ଧି ଅଛି, ତେଣୁ ତାକୁ ବିନିଯୋଗ କଲେ ସମୃଦ୍ଧି ମିଳୁ, ମିଳେ ନାହିଁ ।
୩. ଦେଶ ସ୍ୱାଧୀନ ହେଲା, ବେକାର କି ଗରିବ ହୋଇ କେହି ନ ରହନ୍ତୁ । କାର୍ଯ୍ୟ କ୍ଷେତ୍ରରେ ଦିଶେ ଏ ଗୋଟିଏ ଦୁରାଶା ।
୪. ରାଜନୀତି ସଙ୍କୋଚ ହେଉ। ଲୋକମାନେ ଦେଶର ପ୍ରକୃତ ସେବକ ହୁଅନ୍ତି । ସୁବିଧାବାଦୀ ଅସତିଆ ଭୋଟ-ଲିଟ ସ୍ୱାର୍ଥାନ୍ଧ ମଣିଷ ନ ହୁଅନ୍ତି। ଦିଶେ ଓଲଟା ।

ଏ ଉଭଟ ପରିସ୍ଥିତିକୁ ସେମାନେ କଟୁ ସମାଲୋଚନା କରନ୍ତି । ହୋଇଛି ବିତାଙ୍କ ବହିରେ । ଏଭଳି ଶ୍ଳେଷ, ଏଭଳି ବିଦ୍ରୂପ ରହିଛି ଯେ ହାଡରୁ ମାଉଁସ ଝଡ଼ି ପଡ଼ିବ । (ପୂର୍ବଭାଷା, (ଉପନ୍ୟାସ)-ପୃ-୪୦) ଉପନ୍ୟାସର ପରିକଳ୍ପିତ ପ୍ରତିଟି ଚରିତ୍ର ସତେଯେପରି ଆମ ସମାଜର ପ୍ରତିନିଧିତ୍ୱ କରି ବଖାଣିଛନ୍ତି ନିଜନିଜ ସଂଘର୍ଷର କାହାଣୀ । ଦେବ, ବିଜୟ, ଡାକ୍ତର ନରେଶ, ରବି, ନବଘନ ପ୍ରଭୃତି ଚରିତ୍ର ସ୍ୱାଧୀନ ଭାରତର ଅଗଣିତ ବେକାରୀ ଯୁବ ସଂପ୍ରଦାୟର ପ୍ରତିନିଧିତ୍ୱ କରିଥିବାବେଳେ ବଳଭଦ୍ର ସିଂ ଶଠ, ପ୍ରବର୍ତ୍ତକ ତଥା ନୀତିଭ୍ରଷ୍ଟ ରାଜନେତାଙ୍କ ପ୍ରତିନିଧିତ୍ୱ କରିଛି । ମୋଟଉପରେ ଦାଶରଥିଙ୍କ ଏହି ପଥ ଉପନ୍ୟାସଟି ସାମ୍ପ୍ରତିକ ଭାରତୀୟମାନଙ୍କ ସମସ୍ୟା ଓ ସଂଘର୍ଷର କାହାଣୀକୁ ତୋଳିଧରି ବେଶ ସମୟ ଉପଯୋଗୀ ଓ ଉପାଦେୟ ହୋଇପାରିଛି କହିଲେ ସତ୍ୟର ଅପଳାପ ହେବ ନାହିଁ ।

୨୦୦୧ ମସିହାରେ ରଚିତ ଓ ପ୍ରକାଶିତ 'କାହାଣୀ ଇନ୍ଦ୍ରାବତୀର' ଉପନ୍ୟାସଟି ଶ୍ରୀନନ୍ଦଙ୍କ ଦ୍ୱିତୀୟ ଘଟଣାପ୍ରଧାନ ଓ ପ୍ରୟୋଗିକ ଉପନ୍ୟାସ । ଏକ ବୃହତ୍ ନଦୀବନ୍ଧ ପ୍ରକଳ୍ପକୁ ଭିତ୍ତିକରି ଉକ୍ତ ଉପନ୍ୟାସର ପରିକଳ୍ପନା କରାଯାଇଛି । ଏକ ଜଡ଼ସଡ଼ ନଦୀବନ୍ଧ ନିର୍ମାଣର କାହାଣୀକୁ ଭିତ୍ତିକରି ଆଲୋଚ୍ୟ ଉପନ୍ୟାସର କଥାଭାଗ ପରିକଳ୍ପିତ ହୋଇଥିଲେ ମଧ୍ୟ ଏଥିରେ ଔପନ୍ୟାସିକ ଯେଉଁ ବୈଜ୍ଞାନିକ ଓ ପ୍ରାୟୋଗିକ ଦୃଷ୍ଟିକୋଣରୁ ପରିଚୟ ଦେଇ ସମକାଳୀନ ମାନବ ସଭ୍ୟତାର ଏକ ବିଶେଷ ଦିଗର ରହସ୍ୟ ଉଦ୍‌ଘାଟନ କରିଛନ୍ତି ତାହା ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏକ ବିରଳ ଉଦ୍ୟମ । ଅବିଭକ୍ତ କୋରାପୁଟ ଜିଲ୍ଲା ତଥା ବର୍ତ୍ତମାନର ନବରଙ୍ଗପୁର ଜିଲ୍ଲାରେ ପ୍ରତିଷ୍ଠିତ ଇନ୍ଦ୍ରାବତୀ ଜଳପ୍ରକଳ୍ପ ଏ ଅଞ୍ଚଳର ଅଗଣିତ ଜନସାଧାରଣଙ୍କ ମନରେ ଏକ ନୂତନ ଆଶା ଓ ସଂଭାବନା ସୃଷ୍ଟି କରିଥିଲା । ୧୯୩୯ ମସିହାରେ ତତ୍କାଳୀନ କଳାହାଣ୍ଡିର ରାଜା ପ୍ରତାପ କେଶରୀ ଦେବଙ୍କ ଦ୍ୱାରା ଏହି ନଦୀବନ୍ଧ ଯୋଜନାର ପରିକଳ୍ପନାଠାରୁ ଆରମ୍ଭକରି ଏକବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ସମୟଖଣ୍ଡର ଘଟଣା ବହୁଳ ଇତିହାସ ତଥା ଜଳପ୍ରକଳ୍ପ ସହିତ ଜଡିତ କାରିଗର ଓ ସ୍ଥାନୀୟ ଅଞ୍ଚଳର ଜନସାଧାରଣଙ୍କ ସୁଖ-ଦୁଃଖ, ଆନନ୍ଦ-ବିଶାଦ, ଭୟ-ବିସ୍ମୟ, ପ୍ରେମ-ପୁଲକ ତଥା ଘଟଣା ଦୁର୍ଘଟଣାକୁ ଭିତ୍ତିକରି ଆଲୋଚ୍ୟ ଉପନ୍ୟାସର କଥାବସ୍ତୁ ଗତିଶୀଳ । ସ୍ୱାଧୀନ ଭାରତର ବିକାଶ ପାଇଁ ଅନେକ ଯୋଜନା ଓ ପ୍ରକଳ୍ପ ସରକାରଙ୍କ ଦ୍ୱାରା କରାଯାଇଛି ଓ କରାଯାଉଛି ମଧ୍ୟ ଏକ ବିଶାଳ ଭୂଖଣ୍ଡ ତଥା ବୃହତ ଜନବହୁଳ ରାଷ୍ଟ୍ରରେ ବିଦ୍ୟୁତଶକ୍ତି ଚାହିଦାର ପରିପୂରଣ ଏହିଭଳି ପ୍ରକଳ୍ପଗୁଡ଼ିକ ପ୍ରତିଷ୍ଠା କରାଯାଉଛି । ସାମାଜିକ ଓ ଅର୍ଥନୀତିକ ଅଭିବୃଦ୍ଧି କ୍ଷେତ୍ରରେ ଏହି ପ୍ରକଳ୍ପଗୁଡ଼ିକ ପ୍ରମୁଖ ଭୂମିକା ଗ୍ରହଣ ଆସିଛି । ତେବେ ଏଭଳି ଏକ ଜଳ ବିଦ୍ୟୁତ ପ୍ରକଳ୍ପକୁ ନେଇ ସାହିତ୍ୟ ସର୍ଜନ କରିବା ଖୁବ କୋଚିତ ଦେଖାଯାଏ । କାରଣ ଏଭଳି ଏକ କଥାବସ୍ତୁ ସ୍ପଷ୍ଟ ରୂପାୟନ ପାଇଁ ନୈସର୍ଗିକ ପ୍ରତିଭା ସହିତ ପ୍ରତ୍ୟକ୍ଷ ଅଭିଜ୍ଞତା, ଅଙ୍ଗେନିଭା ଓ ନାନା ପରୀକ୍ଷାନିରୀକ୍ଷା ଜନିତ ବାସ୍ତବ ଜ୍ଞାନର ପରିପକ୍ୱତାର ସମ୍ମେଳନ ଜଣେ ଲେଖକ ନିକଟରେ ସାଧାରଣତଃ ସହଜଲଭ୍ୟ ହୋଇନଥାଏ । ପ୍ରସଙ୍ଗକ୍ରମେ ଏଠାରେ ଅବଶ୍ୟ ସୂଚାଇ ଦିଆଯାଇପାରେ ଯେ ନଦୀବନ୍ଧ ନିର୍ମାଣ ସ୍ମୃତି ସଂପର୍କିତ କେତୋଟି ମାତ୍ର ଗଳ୍ପ ଓ କବିତା ଯଥା ମାୟାଧର ମାନସିଂହଙ୍କ ହୀରାକୁଦ ନଦୀବନ୍ଧ ଯୋଜନା ସମ୍ବନ୍ଧୀୟ 'ଯଦୁ ସ୍ୱାଇଁର ଗାଥା', କବିତା ଭୁବନେଶ୍ୱର ବେହେରାଙ୍କ 'ଗାଁର ଡାକ' ଗୋଦାବରୀଶ ମହାପାତ୍ରଙ୍କ 'ରସୁଲକୁଣ୍ଡ' ନଦୀବନ୍ଧ ଆଧାରରେ 'ଜାତିର ଧକ୍କା' ପ୍ରଭୃତି ଓଡ଼ିଆ ସାହିତ୍ୟର ଏକ ଏକ ଉଲ୍ଲେଖନୀୟ କୃତି ରଚିତ ହୋଇଛି । କିନ୍ତୁ ନଦୀବନ୍ଧ ସ୍ମୃତିକୁ ନେଇ ଓଡ଼ିଆ ଭାଷାରେ ଏକ ପୂର୍ଣ୍ଣାଙ୍ଗ ଉପନ୍ୟାସ ରଚିତ ହୋଇଥିବା ଆମ ଦୃଷ୍ଟିଗୋଚର ହୁଏ ନାହିଁ । ଔପନ୍ୟାସିକ ଦାଶରଥି ନନ୍ଦ ବୃତ୍ତିରେ ଜଣେ ଯନ୍ତ୍ରୀ ଥିବାରୁ ଇନ୍ଦ୍ରାବତୀ ଜଳବିଦ୍ୟୁତ ପ୍ରକଳ୍ପ ସହ ତାଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ସଂପୃକ୍ତି ତଥା ସର୍ବୋପରି ସେ ପ୍ରକଳ୍ପ ଅଞ୍ଚଳରେ ଜଣେ ବାସିନ୍ଦା ଥିବାରୁ ଉକ୍ତ ପ୍ରକଳ୍ପକୁ ନେଇ ଉପନ୍ୟାସ ରଚନା କରିବାପାଇଁ ଯଥେଷ୍ଟ ପ୍ରେରଣା ଲାଭ କରିଥିଲା। ତାଙ୍କ ଲେଖନୀର ଯାଦୁକରି ସ୍ପର୍ଶରେ ସୂକ୍ଷ୍ମ ନିର୍ଜୀବ ନଦୀବନ୍ଧ ମଧ୍ୟ ରସାଳ ଓ ଜୀବନ୍ତ ହୋଇଉଠିଛି । ଏହି ଗୁରୁତ୍ୱପୂର୍ଣ୍ଣ ପ୍ରୟୋଗିକ ବିଷୟର ଉପନ୍ୟାସ ରୂପଦାନ ପାଇଁ ଔପନ୍ୟାସିକ ଶ୍ରୀନନ୍ଦଙ୍କୁ ଯଥେଷ୍ଟ ପ୍ରସ୍ତୁତି । ସାବଧାନତା ଓ ଅନୁଭୂତି ତଥା ଅଭିଜ୍ଞତା ଅର୍ଜନ କରିବାକୁ ପଡ଼ିଥିଲା । ପ୍ରଥମତଃ ଇନ୍ଦ୍ରାବତୀ ଅବବାହିକା ଅଞ୍ଚଳର ସନ୍ତାନ ହୋଇଥିବାରୁ ସେ

ନଦୀର ଗତିପଥ ଓ ସେ ଅଞ୍ଚଳର ଅଧିବାସୀଙ୍କୁ ଖୁବ ସ୍ୱାଭାବିକ ଭାବରେ ଅନୁଭବ କରିଆସିଥିଲେ । ଓଡ଼ିଆ ସାହିତ୍ୟର ଖ୍ୟାତନାମା ଔପନ୍ୟାସିକ ଗୋପୀନାଥ ମହାନ୍ତି ଥିଲେ ଶ୍ରୀନନ୍ଦଙ୍କ ସାହିତ୍ୟିକ ଗୁରୁ ଆଲୋଚ୍ୟ ଉପନ୍ୟାସ ରଚନା ପାଇଁ ଗୋପୀନାଥ ମହାନ୍ତି ଥିଲେ ଶ୍ରୀନନ୍ଦଙ୍କ ସାହିତ୍ୟିକ ଗୁରୁ ଆଲୋଚ୍ୟ ଉପନ୍ୟାସ ରଚନା ପାଇଁ ଗୋପୀନାଥ ମହାନ୍ତିଙ୍କ ସାରସ୍ୱତ ଦିଗ୍‌ଦର୍ଶନ ତଥା ପ୍ରକଳ୍ପ ସହ ଜଡ଼ିତ ସତୀର୍ଥ ଯନ୍ତ୍ରୀମାନଙ୍କ ଆକୁଣ୍ଠିତ ସହଯୋଗ ତାଙ୍କୁ ଏଭଳି ଏକ ସାରସ୍ୱତ ସୃଷ୍ଟି ପାଇଁ ଯଥେଷ୍ଟ ସହାୟକ ହୋଇଥିଲା ।

'କାହାଣୀ ଇନ୍ଦ୍ରାବତୀ'ର ମୁଖ୍ୟତଃ ଘଟଣା ପ୍ରଧାନ ଐତିହାସିକ ଉପନ୍ୟାସ । ଇନ୍ଦ୍ରାବତୀ ଜଳ ବିଦ୍ୟୁତ ପ୍ରକଳ୍ପ ନିର୍ମାଣ ମୁଖ୍ୟ ଘଟଣା ସହିତ ଆଉ କିଛି ପାରିପାର୍ଶ୍ୱିକ ଘଟଣାର ସୁଚାରୁ ସମନ୍ୱୟରେ ଉକ୍ତ ଉପନ୍ୟାସର ସୁପରିକଳ୍ପନା କରାଯାଇଛି । ସୂକ୍ଷ୍ମ ତଥ୍ୟଭିତ୍ତିକ ନିଛକ ବାସ୍ତବତାର ରୂପାୟନ ସାହିତ୍ୟର କଳାତ୍ମକ ଦିଗକୁ ଦୁର୍ବଳ କରିପକାଏ । ତେଣୁ ଔପନ୍ୟାସିକ ଖୁବ୍ ସଚେତନତାର ସହ ଉପନ୍ୟାସର ପ୍ରାରମ୍ଭରେ ସଂପୃକ୍ତ ଅଞ୍ଚଳରେ ପ୍ରଚଳିତ ଇନ୍ଦ୍ରାବତୀ ନଦୀ ଉତ୍ପତ୍ତି ସମ୍ପର୍କିତ ଏକ ଲୋକ କାହାଣୀର ଆଶ୍ରୟ ନେଇଛନ୍ତି । ଯଦ୍ୱାରା ଆଲୋଚ୍ୟ ଉପନ୍ୟାସଟି ପାଠକଲା ପରେ ପାଠକଙ୍କ ମନରେ ପରମ୍ପରା ଓ ଆଧୁନିକତାର ମଧୁର ରାଗିଣୀ ଝଙ୍କୃତ ହୁଏ। ଆଶା ଓ ବିଶ୍ୱାସ ସହି ବୈଜ୍ଞାନିକ ଯୁକ୍ତିନିଷ୍ଠତାର ଅଭିନବ ସମନ୍ୱୟରେ ରଚିତ ଉପନ୍ୟାସଟି କେବଳ ଏକ ଜଳ ବିଦ୍ୟୁତ ପ୍ରକଳ୍ପ ନିର୍ମାଣର ସ୍ମୃତି ଚାରଣ ନୁହେଁ । ବରଂ ଅଗଣିତ ଜନସାଧାରଣଙ୍କ ଆଶା ବିଶ୍ୱାସ ସ୍ୱପ୍ନ ଓ ସଂଭାବନାର ଏକ ଐତିହାସିକ ଦଲିଲ କହିଲେ ଅତ୍ୟୁକ୍ତି ହେବ ନାହିଁ । ତତ୍କାଳୀନ କଳାହାଣ୍ଡି ଗଡଜାତ ରାଜ୍ୟର ଶାସକ ନରପତି ମହାରାଜା ପ୍ରତାପ କେଶରୀ ଦେଓ ପ୍ରକଳ୍ପ ଅଞ୍ଚଳରେ ବ୍ୟାଘ୍ର ଶିକାର କରୁଥିବା ସମୟରେ ଇନ୍ଦ୍ରାବତୀ ନଦୀ ଆବିଷ୍କାର କରିଥିଲେ । ଏହି ନଦୀର ଜଳଧାରା କିଭଳି ତାଙ୍କ ଶାସିତ ରାଜ୍ୟର ଜଳ କଷ୍ଟକୁ ଦୂର କରିପାରିବ ତଥା ଅନାବୃଷ୍ଟିଜନିତ ଶୁଷ୍କ ଟାଙ୍ଗରା ଭୂଇଁରେ ପରିଣତ ହୋଇଥିବା କଳାହାଣ୍ଡିର କୃଷି କ୍ଷେତ୍ର କିଭଳି ଜଳସେଚିତ ହୋଇ ଘନ ସବୁ ଜିମାରେ ରୂପାନ୍ତରିତ ହେବ ତାହା ଚିନ୍ତା କରି ସେ ଏହି ନଦୀ ଉପରେ ଏକ ଜଳସେଚନ ପ୍ରକଳ୍ପ ପାଇଁ ସ୍ୱପ୍ନ ଦେଖିଥିଲେ । ପ୍ରତାପ କେଶରୀଙ୍କ ସେହି ସ୍ୱପ୍ନଠାରୁ ଆରମ୍ଭ କରି ବ୍ରିଟିଶ ସରକାଙ୍କ ଯୋଜନାପ୍ରତି ଆଗ୍ରହ, ସ୍ୱାଧୀନ ଭାରତର ଯନ୍ତ୍ରୀମାନଙ୍କଦ୍ୱାରା ପ୍ରକଳ୍ପର ଯୋଜନା ପ୍ରସ୍ତୁତି, ସ୍ୱାଧୀନ ଭାରତର ନୂତନ ସରକାରଙ୍କ ଯୋଜନା ପ୍ରତି ଉଦାସିନତା ଓ ତତ୍‌ଜନିତ ବିଳମ୍ବ କେତେକ ନିସ୍ୱାର୍ଥପର ବ୍ୟକ୍ତିମାନଙ୍କ ନିଷ୍ପାପର ଉଦ୍ୟମ ଦ୍ୱାରା ଯୋଜନାର ସରକାରୀ ସୀକୃତି ଓ ଅର୍ଥ ମଞ୍ଜୁରୀ, ସକଳ ବାଧାବିଘ୍ନ ସତ୍ତ୍ୱେ ପ୍ରାକୃତିକ ବିପର୍ଯ୍ୟୟଜନିତ ଅଘଟଣ, ମଣିଷକୃତ ଅବହେଳା, ବିଶ୍ୱ ବ୍ୟାଙ୍କର କଟକଣା, ଉପସାଗରୀୟ ଯୁଦ୍ଧର ପ୍ରଭାବ (୧୯୯୦) ଯୋଗୁଁ କାର୍ଯ୍ୟର ବିଳମ୍ବିତ ଗତି ଓ ପ୍ରକଳ୍ପ ଦ୍ୱାରା ପ୍ରଭାବିତ ଲୋକଙ୍କ ଥଇଥାନ ସମସ୍ୟା ପ୍ରଭୃତି ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱ ସମୟଖଣ୍ଡରେ ଘଟଣାବଳୀକୁ ନେଇ ଆଲୋଚ୍ୟ ଉପନ୍ୟାସର ବିଷୟ ପରିକଳ୍ପନା କରାଯାଇଛି । ଉପନ୍ୟାସରେ ସ୍ଥାନିତ ବହୁ ଘଟଣା ମୂଳ ଘଟଣା ସହିତ ପୋଷ୍ୟ-ପୋଷକଭିତ୍ତିରେ ଏଭଳି ଭାବରେ ସଂଯୋଜିତ ଯେ ପାଠକରେ ମନେହୁଏ ବର୍ଣ୍ଣିତ ଘଟଣାଗୁଡ଼ିକ ଉପନ୍ୟାସର ଭାବଗତ ସୌନ୍ଦର୍ଯ୍ୟ ବିଧାନ ସହ ପାଠକ ମନରେ ଦ୍ୱନ୍ଦ୍ୱ, ଉତ୍କଣ୍ଠା, ବିସ୍ମୟ, ଭୟ, ସାହସ ଓ ରୋମାଞ୍ଚ ଆଦି ଭାବ ଉଦ୍ରେଗରେ ଖୁବ୍ ସହାୟକ ହୋଇଛି । ଉପନ୍ୟାସରେ ବର୍ଣ୍ଣିତ ଘଟଣାର ବାସ୍ତବତା ଓ ସ୍ୱାଭାବିକତା ହେଉଛି ଉପନ୍ୟାସ ଶିଳ୍ପ-ସୌନ୍ଦର୍ଯ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ଏ ଦୃଷ୍ଟିରୁ ଐତିହାସିକ ହେଉ କି ସାମାଜିକ ଉପନ୍ୟାସ ହେଉ ସାଧାରଣତଃ ଘଟଣା ପ୍ରଧାନ ଉପନ୍ୟାସରେ ବର୍ଣ୍ଣିତ ବସ୍ତୁର ବାସ୍ତବତା ପ୍ରତି ଲେଖକ ଅପେକ୍ଷାକୃତ ଅଧିକ ଧ୍ୟାନଶୀଳ ହୋଇଥାଏ । ଆଲୋଚ୍ୟ ଉପନ୍ୟାସରେ ଔପନ୍ୟାସିକ ଏଥିପ୍ରତି ଖୁବ ସଚେତନ ଥିଲାଭଳି ମନେ ହୁଏ । 'କାହାଣୀ ଇନ୍ଦ୍ରାବତୀର' ଉପନ୍ୟାସଟି ସଂପୂର୍ଣ୍ଣ ତଥ୍ୟଭିତ୍ତିକ ପ୍ରାୟୋଗିକ ଉପନ୍ୟାସ ହୋଇଥିବାରୁ ପାଠକ କିଭଳି ରଚନାଟିକୁ ପଢିଲାବେଳେ କ୍ଳାନ୍ତିବୋଧ କରିବେ ନାହିଁ । ସେଥିପାଇଁ ଔପନ୍ୟାସିକ ଆଲୋଚ୍ୟ ଉପନ୍ୟାସଟିରେ ଅନେକ କପୋଳକଳ୍ପିତ କାହାଣୀ ଓ ଘଟଣା ଚମତ୍କାର ଭାବେ ସଂଯୋଜିତ କରିଛନ୍ତି । ତଥାପି ସ୍ଥଳ ବିଶେଷରେ ଔପନ୍ୟାସିକ ମହୋଦୟ ତଥ୍ୟ ଓ ବିବରଣୀ ଦ୍ୱାରା ମୋହଗ୍ରସ୍ତ ହୋଇ ଏଭଳି ବର୍ଣ୍ଣନା ଦେଇଯାଇଛନ୍ତି, ଯାହା ଉପନ୍ୟାସର କଳାପକ୍ଷକୁ କେତେକାଂଶରେ ଦୁର୍ବଳ କରିପକାଇଛି । ଔପନ୍ୟାସିକ ନିଜେ ଜଣେ ଯନ୍ତ୍ରୀ ଓ ସାରସ୍ୱତ ସ୍ରଷ୍ଟାଥିବାରୁ ଉପନ୍ୟାସଟି ରଚନା କଲାବେଳେ ସତର୍କତାର ସହ ଲେଖନୀଚାଳନା କରିଛନ୍ତି । କେତେବେଳେ ଯୋଜନାପ୍ରତି ଉତ୍ସର୍ଗୀକୃତ ଯନ୍ତ୍ର ମଣିଷଟି ବୈଜ୍ଞାନିକ ତଥ୍ୟ ଓ ଗାଣିତିକ ସୂତ୍ରରେ ଧୂସର ପ୍ରାନ୍ତର ମଧ୍ୟରେ ନବଭାରତର ନିର୍ମାଣ ପାଇଁ ବ୍ୟଗ୍ର ତ ଆଉ କେତେବେଳେ ଅଗଣିତ ସର୍ବହରା ଜନତାଙ୍କ ଦୁଃଖ-ଦୁର୍ଦ୍ଦଶା ପ୍ରତି ସମ୍ବେଦନଶୀଳ ହୋଇଉଠିଛି । 'କାହାଣୀ ଇନ୍ଦ୍ରବତୀର' ଉପନ୍ୟାସଟି ମୁଖ୍ୟତଃ ଏକ ଘଟଣା ବହୁଳ ଉପନ୍ୟାସ ହୋଇଥିବାରୁ ଚରିତ୍ର ଅପେକ୍ଷା ଘଟଣା ହିଁ ପ୍ରମୁଖ ଭୂମିକା ଗ୍ରହଣ କରିଛି । ଆଲୋଚ୍ୟ ଉପନ୍ୟାସର ସେଭଳି କୌଣସି ନିର୍ଦ୍ଦିଷ୍ଟଭାବେ ନାୟକ-ନାୟିକା ଚରିତ୍ର ପରିଦୃଷ୍ଟ ହୁଅନ୍ତି ନାହିଁ । ଯନ୍ତ୍ରୀ ଅଧିକାରୀ ଶ୍ରମିକ କଣ୍ଟ୍ରାକ୍ଟର ତଥା ସ୍ଥାନୀୟ ଜନତା ହିଁ ଏହି ଉପନ୍ୟାସର ଜଣେ ଜଣେ ସ୍ଥିତିଶୀଳ ଚରିତ୍ର । ଏହି ଚରିତ୍ରଗୁଡ଼ିକର ନା କୌଣସି ବିବର୍ତ୍ତନ ଅଛି ନା ଉପନ୍ୟାସର ଗତିଶୀଳତା ସହ ଚାରିତ୍ରିକ ବିକାଶ ଅଛି, କେବଳ ଘଟଣାଗୁଡ଼ିକ ହିଁ ଏହି ଉପନ୍ୟାସର ପ୍ରମୁଖ ଆଧାର । ତଥାପି କଳାହାଣ୍ଡିର ରାଜା ପ୍ରତାପ କେଶରୀ ଦେଓ, ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହ, ବିଜୁ ପଟ୍ଟନାୟକ ରାଜ୍ୟପାଳ ଅଯୋଧ୍ୟାନାଥ ଖୋସଲା, ପ୍ରଧାନମନ୍ତ୍ରୀ ମୋରା ରଜୀ ଦେଶାଇ, ଭୁବନେଶ୍ୱର ବେହେରା ପ୍ରମୁଖ ସମକାଳୀନ ବିରଳ ବ୍ୟକ୍ତିତ୍ୱମାନେ ଉପନ୍ୟାସର ଘଟଣାକ୍ରମେ ଚରିତ୍ରଭାବେ କଥାବସ୍ତୁ ମଧ୍ୟରେ ଆତ୍ମପ୍ରକାଶ କରିଛନ୍ତି । ଯାହାଦ୍ୱାରା ଉପନ୍ୟାସଟି ଅତ୍ୟନ୍ତ ବାସ୍ତବଧର୍ମୀ ଓ ପ୍ରାୟୋଗିକ ହୋଇପାରିଛି । ଚମତ୍କାର ବର୍ଣ୍ଣନାଶୈଳୀ, ଘଟଣାଗୁଡ଼ିକର ସୁବିନ୍ୟାସ ଚାତୁରୀ ତଥା ସହଜ ସରଳ ସୁବୋଧ ଭାଷାର ସଂଯୋଜନା ଦ୍ୱାରା ଉପନ୍ୟାସର ଉଭୟ ଭାବପକ୍ଷ ଓ କଳାପକ୍ଷକୁ କମନୀୟ କରି ଗଢିତୋଳିଛନ୍ତି କହିଲେ ବାହୁଲ୍ୟ ହେବନାହିଁ ।

କେବଳ ଘଟଣାବହୁଳ ଉପନ୍ୟାସ ରଚନା କ୍ଷେତ୍ରରେ କଥାକାର ଦାଶରଥି ନନ୍ଦ ନିଜ ସାରସ୍ୱତ ଦକ୍ଷତା ପ୍ରତିପାଦନ କରିନାହାନ୍ତି ବରଂ 'ଶହୀଦ ଲକ୍ଷ୍ମଣ ନାୟକ' (୧୯୭୭) ଓ 'ଗଢିବାର ସ୍ୱପ୍ନ' (୧୯୦୪) ଭଳି ଦୁଇଦୁଇଟି ଚରିତ ଉପନ୍ୟାସ ସୃଷ୍ଟିକରି ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିଛନ୍ତି। ପ୍ରାକ୍ ସ୍ୱାଧୀନତା କାଳରେ ଚରିତଧର୍ମୀ ଉପନ୍ୟାସ ରଚନା କ୍ଷେତ୍ରରେ ସେଭଳି କୌଣସି ଉଲ୍ଲେଖନୀୟ କୃତି ଦୃଷ୍ଟି ଗୋଚର ନ ହେଲେ ମଧ୍ୟ ଫକୀରମୋହନଙ୍କ ଆତ୍ମଜୀବନୀ ଚରିତକୁ ବହୁ ସମୀକ୍ଷକ ପ୍ରଥମ ଓଡ଼ିଆ ଚରିତ ଉପନ୍ୟାସ ଭାବେ ଅଭିହିତ କରିଥାନ୍ତି । କିନ୍ତୁ ଶୀଳ୍ପକଳା ଦୃଷ୍ଟିରୁ ଫକୀରମୋହନଙ୍କ ଆତ୍ମଜୀବନୀଟି ଉପନ୍ୟାସ ଅପେକ୍ଷା ଜୀବନୀ ସାହିତ୍ୟ

ଭାବେ ଅଭିହିତ କରିବା ଅଧିକ ଯୁକ୍ତିସଂଗତ। ଏ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ଚରିତ ଉପନ୍ୟାସର ପ୍ରଥମ ସଫଳସ୍ରଷ୍ଟା ଭାବରେ ପ୍ରସିଦ୍ଧ କଥାକାର ସୁରେନ୍ଦ୍ର ମହାନ୍ତି ଅଗ୍ରଗଣ୍ୟ । ଉତ୍କଳ ଗୌରବ ବାରିଷ୍ଟର ମଧୁସୂଦନଙ୍କ ଜୀବନକୁ ଭିତ୍ତିକରି 'ଶତାବ୍ଦୀର ସୂର୍ଯ୍ୟ' (୧୯୭୦) ଓ 'କୁଳବୃଦ୍ଧ' (୧୯୭୭) ନାମକ ଦୁଇଟି ଚରିତ ଉପନ୍ୟାସ ସୃଷ୍ଟି କରିଯାଇଛନ୍ତି । ଏତଦ୍‌ବ୍ୟତୀତ ସପ୍ତମ ଦଶନ୍ଧି ପରବର୍ତ୍ତୀ ସମୟରେ ଗୋରାଚାନ୍ଦ ମିଶ୍ରଙ୍କ 'ଶ୍ରୀ ଚୈତନ୍ୟ' (୧୯୭୭), ବ୍ରଜମୋହନ ମହାନ୍ତିଙ୍କ 'ଲଳିତ ଲବଙ୍ଗଲତା' (୧୯୮୨), କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ନୀରବ କବିଟିଏ' (୧୯୮୩), ନରସିଂହ ମିଶ୍ରଙ୍କ 'ସୁଭାଷ ଏକ ଅନିର୍ବାଣ ଶିଖା' (୧୯୮୭) ତଥା ଦାଶ ବେନହୁରଙ୍କ 'ପଗଡ଼ି ପୁରୁଷ' ଭଳି ଏକାଧିକ ଜୀବନୀ ଉପନ୍ୟାସ ରଚିତ ହୋଇ ଏ ମାଟିର ଅନେକ ବରପୁତ୍ରଙ୍କୁ ପାଠକଙ୍କ ଦୃଷ୍ଟି ସମ୍ମୁଖକୁ ଆଣିବା ପାଇଁ ପ୍ରଶଂସନୀୟ ଉଦ୍ୟମ କରାଯାଇଛି । ଏହି ପରିପ୍ରେକ୍ଷୀରେ କୋରାପୁଟ ଭଳି ବଣପାହାଡ ଘେରା ଓଡ଼ିଶାର ଏକ ଉପାନ୍ତ ଜିଲ୍ଲାରେ ଜନ୍ମିତ ମହାନ ସ୍ୱାଧୀନତା ସଂଗ୍ରାମୀ ସହିଦ ଲକ୍ଷ୍ମଣ ନାୟକଙ୍କ ଅମ୍ଳାନ ଜୀବନୀକୁ ଭିତ୍ତିକରି ଔପନ୍ୟାସିକ ଶ୍ରୀ ନନ୍ଦ ୧୯୭୭ ମସିହାରେ 'ଶହୀଦ ଲକ୍ଷ୍ମଣ ନାୟକ' ନାମକ ଏକ ଚରିତ ଉପନ୍ୟାସ ରଚନା କରିଥିଲେ । ସାମାଜିକ ବା କାଳ୍ପନିକ ଉପନ୍ୟାସ ରଚନା ତୁଳନାରେ ଜୀବନୀମୂଳକ ଉପନ୍ୟାସ ରଚନା ଅପେକ୍ଷାକୃତ ଆୟାସସାଧ। କାରଣ ଏଥିରେ ସାମାଜିକ ଉପନ୍ୟାସ ସହଜ କଳ୍ପନା ଅପେକ୍ଷା ଉପଜୀବ୍ୟ ବ୍ୟକ୍ତି ଜୀବନ ସମୟ ଓ ସାମାଜିକ ଅବସ୍ଥା ସହ ଉପନ୍ୟାସର ଶିଳ୍ପ କଳ୍ପନାକୁ ଧ୍ୟାନ ଦେବାକୁ ହୋଇଥାଏ । ତେଣୁ ଆଲୋଚ୍ୟ ଉପନ୍ୟାସ ରଚନା କଲାବେଳେ କଥାଶିଳ୍ପୀ ଦାଶରଥି ନନ୍ଦ କେବଳ କପୋଳକଳ୍ପିତ କାହାଣୀ କିମ୍ବା କାନଶୁଣା କଥା ଉପରେ ଗୁରୁତ୍ୱ ନଦେଇ କ୍ଷେତ୍ର ପର୍ଯ୍ୟଟନ ଓ ତଥ୍ୟାନୁସନ୍ଧାନ ପାଇଁ ନିଜକୁ ଦୀର୍ଘ ସମୟ ନିୟୋଜିତ ରଖିଛନ୍ତି । କେବଳ ତଥ୍ୟ ବିଶ୍ଳେଷଣ କିମ୍ବା ନିର୍ଭୁଲ ଐତିହାସିକ ଦଲିଲ ଉପରେ ଏକ ସଫଳ ଚରିତ ଉପନ୍ୟାସ ରଚନା କରାଯାଇପାରିବନାହିଁ । ଏଥିପାଇଁ ସ୍ରଷ୍ଟାଙ୍କୁ ସଂପୃକ୍ତ ବ୍ୟକ୍ତିବିଶେଷଙ୍କ ଜୀବନୀ ଉପରେ ଗଭୀର ଅଧ୍ୟୟନ ତଥା ବ୍ୟାପକ ପର୍ଯ୍ୟବେକ୍ଷଣ ଦୃଷ୍ଟିଭଙ୍ଗୀର ଆବଶ୍ୟକତା ହୋଇଥାଏ । ଆଲୋଚ୍ୟ ଉପନ୍ୟାସ ରଚନା ପାଇଁ ଔପନ୍ୟାସିକ ନିଜ ସାହିତ୍ୟଗୁରୁ ଗୋପୀନାଥ ମହାନ୍ତି ତତ୍କାଳୀନ ମାଲକାନଗିରି ଜିଲ୍ଲା ବିଧାୟକ ଶ୍ରୀ ଗଙ୍ଗାଧର ମାଢ଼ ଓ ସ୍ଥାନୀୟ ଅଞ୍ଚଳର ଜନସାଧାରଣଙ୍କ ସହାୟତା ନେଇଛନ୍ତି ।

ଉପନ୍ୟାସର ଗଠନକଳା ଦୃଷ୍ଟିରୁ ଏହା ଚରିତ ଉପନ୍ୟାସ ହୋଇଥିଲେ ମଧ୍ୟ ଏହାର କଥାବସ୍ତୁ ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଭାରତ ତଥା ଓଡ଼ିଶାର ଐତିହାସିକ ପ୍ରେକ୍ଷାପଟ୍ଟ ଉପରେ ପରିକଳ୍ପିତ । ୧୮୦୩ ମସିହାରେ ଇଂରେଜମାନଙ୍କ ଦ୍ୱାରା ଓଡ଼ିଶା ଅଧିକୃତ ହେଲାପରେ ଏ ରାଜ୍ୟର ସାମାଜିକ, ଅର୍ଥନୀତିକ ତଥା ରାଜନୀତିକ କ୍ଷେତ୍ରରେ ବ୍ୟାପକ ଅଭାବନୀୟ ପରିସ୍ଥିତି ସୃଷ୍ଟି ହୋଇଥିଲା । ଇଂରେଜମାନଙ୍କ ଶୋଷଣ ଓ ଦମନ ନୀତି ଦ୍ୱାରା ଅତିଷ୍ଠ ହୋଇ ଓଡ଼ିଶାର ଗଡଜାତ ରାଜ୍ୟଗୁଡ଼ିକରେ କମ୍ପାନୀ ସରକାରଙ୍କ ବିରୁଦ୍ଧରେ ଅସନ୍ତୋଷର ଭାବ ଦାନା ବାନ୍ଧିଥିଲା । ସେହି ବିଦ୍ୱେଷ ଭାବରୁ ହିଁ ଜନ୍ମ ନେଇଥିଲା ୧୮୧୭ ମସିହରେ ପାଇକ ବିଦ୍ରୋହ । ଯଥାର୍ଥରେ ଏହି ବିଦ୍ରୋହ ହିଁ ଥିଲା ଏହି ମାଟିର ପ୍ରଥମ ମୁକ୍ତି ସଂଗ୍ରାମ । କିନ୍ତୁ ଚତୁର ଗୋରା ସରକାର ଓଡ଼ିଆମାନଙ୍କ ଏହି ବିଭତ୍ସ ବିଦ୍ରୋହକୁ ସଫଳତାର ସହ ଦମନ କରିଥିଲେ । ୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିଷ୍ଠା ଦ୍ୱାରା ଇଂରେଜମାନଙ୍କ ହୁଙ୍କାପିଟା ଶାସନ ବିରୁଦ୍ଧରେ ଆରମ୍ଭ ହୋଇଥିଲା ପ୍ରଥମ ଆନୁଷ୍ଠାନିକ ସ୍ୱାଧୀନତା ସଂଗ୍ରାମ ପରବର୍ତ୍ତୀ ସମୟରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଏହି ସଂଗ୍ରାମ ଅଧିକ ବ୍ୟାପକ ଓ ତ୍ୱରାନ୍ୱିତ ହେଉଥିଲା । ଗାନ୍ଧୀଙ୍କ ଆହ୍ୱାନରେ ଅଗଣିତ ପରାଧୀନ ଭାରତୀୟ ସ୍ୱତଃସ୍ଫୂର୍ତ୍ତ ଭାବେ ନିଜ ମାତୃଭୂମିର ମୁକ୍ତିପାଇଁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲା । କି ଗ୍ରାମ, କି ପଲ୍ଲୀ, କି ସହର, କି ନଗର ସବୁଠି କେବଳ ଦେଶମୁକ୍ତି ଆନ୍ଦୋଳନର ଉଦାର ଉଚ୍ଚାରିଣ, ଜଙ୍ଗଲ ପରିବେଷ୍ଟନି ଆଦିବାସୀ ବହୁଳ କୋରାପୁଟର ଅଖ୍ୟାତ ପଲ୍ଲୀ ଟେଣ୍ଟୁଳିଗୁମ୍ମା ସେହି ଗୁଞ୍ଜରଣରୁ କିଭଳି ବାଦ୍ ପଡନ୍ତା । ସେହି ଗ୍ରାମର ସରଳ ଆଦିବାସୀ ଯୁବକ ଲକ୍ଷ୍ମଣ ନାଏକ ଦେଶମୁକ୍ତି ଆନ୍ଦୋଳନରେ ଜଣେ ସକ୍ରିୟକର୍ମୀ ଭାବରେ ଯୋଗଦେଇ ମାତୃଭୂମି ପାଇଁ ଜୀବନ ଉତ୍ସର୍ଗ କରିଥିଲେ । ବିଶେଷତଃ ଏହି ଜିଲ୍ଲାର ତଥାକଥିତ ଅଶିକ୍ଷିତ ଆଦିବାସୀମାନେ ଯେପରି ଦେଶପାଇଁ ଆତ୍ମୋତ୍ସର୍ଗ କରି ଶହୀଦ ହୋଇଯାଇଥିଲେ । ସେସବୁ ଆଜି ଇତିହାସର ଅନ୍ଧକାର ଭିତରେ ଅଦୃଶ୍ୟ ଓ ଅସ୍ପଷ୍ଟ । ଆଲୋଚ୍ୟ ଉପନ୍ୟାସରେ ଲେଖକ ଆପଣା ପ୍ରତିଭା ଓ ସାଧନାବଳରେ ସେହି ଅନ୍ଧକାରକୁ ଭେଦକରି ସ୍ୱାଧୀନତା ଆନ୍ଦୋଳନରେ ଲକ୍ଷ୍ମଣ ନାଏକଙ୍କ ଭଳି ଆଦିବାସୀ ବ୍ୟକ୍ତିର ସାହସ, ତ୍ୟାଗ, ପରିଶ୍ରମ, ନେତୃତ୍ୱ, ଜନସେବା ଓ ସର୍ବୋପରି ଶହୀଦତ୍ୱ ବରଣ କରିନେବା ଭଳି ଚମକପ୍ରଦ ପ୍ରସଙ୍ଗକୁ କଳାତ୍ମକ ରୂପ ଦେଇ ସେହି ଅମର ଆତ୍ମାପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ବାଢ଼ିଛନ୍ତି । ସମଗ୍ର ଉପନ୍ୟାସଟିରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ସ୍ୱାଧୀନତା ଆନ୍ଦୋଳନରେ କୋରାପୁଟ ଅଞ୍ଚଳର ସରଳ ଅଶିକ୍ଷିତ ଆଦିବାସୀମାନଙ୍କ ସକ୍ରିୟ ଅଂଶଗ୍ରହଣ ଅକୁଣ୍ଠିତ ବଳୀଦାନ ପ୍ରସଙ୍ଗ ଉପରେ ପର୍ଯ୍ୟବସିତ । ଭାରତୀୟ ମୁକ୍ତି ଆନ୍ଦୋଳନର ଯଥାର୍ଥ ଇତିହାସ ତଥା ସ୍ୱାଧୀନତା ସଂଗ୍ରାମୀମାନଙ୍କର ବଳିଦାନର ସଠିକ୍ ମୂଲ୍ୟାୟନ ଏଯାବତ ହୋଇପାରି ନଥିବାବେଳେ କୋରାପୁଟ ଭଳି ଏ ଦୁର୍ଗମ ଉପାନ୍ତ ଅଞ୍ଚଳରେ ଦେଶଭକ୍ତମାନଙ୍କୁ ସେମାନଙ୍କ ପ୍ରାପ୍ୟ ସମ୍ମାନ ବା ମିଳନ୍ତା କିପରି । ଜଣେ ସଚେତନଶୀଳ ସ୍ରଷ୍ଟାଭାବେ ଔପନ୍ୟାସିକ ଦାଶରଥି ନନ୍ଦ ଶହୀଦ ଲକ୍ଷ୍ମଣ ନାୟକ ଉପନ୍ୟାସ ରଚନା କରି ନିଜର ସାମାଜିକ ଦାୟିତ୍ୱକୁ ଯଥାର୍ଥ ଭାବେ ତୁଲେଇଛନ୍ତି । ଏହି ଉପନ୍ୟାସଟି ଲକ୍ଷ୍ମଣ ନାୟକଙ୍କ ସାମଗ୍ରିକ ଜୀବନ କାହାଣୀକୁ ଭିତ୍ତିକରି ସୃଷ୍ଟି ହୋଇଥିଲେହେଁ ପ୍ରସଙ୍ଗ କ୍ରମେ ପ୍ରାକ୍ ସ୍ୱାଧୀନତା କାଳୀନ କୋରାପୁଟ ଅଞ୍ଚଳରେ ସାମାଜିକ ଓ ରାଜନୀତିକ ଅବସ୍ଥା, ମାଲକାନଗିରି ଅଞ୍ଚଳର ଆଦିବାସୀମାନଙ୍କ ଜୀବନଚିତ୍ର, ଲକ୍ଷ୍ମଣ ନାୟକଙ୍କ ଜନ୍ମ ଓ ବାଲ୍ୟ ବୃତ୍ତାନ୍ତ, ଜୟପୁର ରାଜାଙ୍କ ଅଧିନରେ ମୁସ୍ତାଦାର ଭାବରେ ରାଜ କର୍ତ୍ତବ୍ୟ ସଂପାଦନ ଗାନ୍ଧୀଙ୍କ ଡାକରାରେ ପ୍ରେରିତ ହୋଇ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶଗ୍ରହଣ, ସରଳ ଆଦିବାସୀମାନଙ୍କୁ ନେତୃତ୍ୱ ପ୍ରଦାନ, ମାତିଲି ଥାନାରେ ବିକ୍ଷୋଭ ପ୍ରଦର୍ଶନ ଓ ଥାନାପୋଡ଼ି, ବ୍ରିଟିଶ ପୋଲିସ୍ ଦ୍ୱାରା ଗିରଫଦାରି ଓ କାରାବରଣ ପରିଶେଷରେ ଲକ୍ଷ୍ମଣଙ୍କୁ ଫାଶିଦଣ୍ଡ ଦେଶ ଦ୍ୱାରା ଶହୀଦତ୍ୱ ବରଣ ପ୍ରଭୃତି ଘଟଣାକୁ ନିଖୁଣଭାବେ ରୂପ ଦିଆଯାଇଛି । ନିଛକ ଐତିହାସିକତା ଓ ନିଖୁଣ କଳାତ୍ମକତାର ମଧୁର ସମୟରେ ରଚିତ ଏହି ଉପନ୍ୟାସଟି ସ୍ରଷ୍ଟାର ବ୍ୟକ୍ତିଗତ ଆବେଗ ଓ ଉଚ୍ଛ୍ୱାସ ପ୍ରବଣତାଠାରୁ ଖୁବ୍ ଉର୍ଦ୍ଧ୍ୱରେ । ଉପନ୍ୟାସରେ ବର୍ଣ୍ଣିତ ଘଟଣାଗୁଡ଼ିକୁ କଳ୍ପନା ଦ୍ୱାରା ଅତିରଞ୍ଜିତ କରିବାପାଇଁ ଲେଖକ ଆଦୌ ଉଦ୍ୟମ କରିନାହାନ୍ତି । ଆଲୋଚ୍ୟ ଉପନ୍ୟାସଟିରେ ବର୍ଣ୍ଣିତ କୌଣସି ଘଟଣା ବା ଚରିତ୍ର ସ୍ରଷ୍ଟାଙ୍କ କଳ୍ପନା ପ୍ରସୂତ ନୁହେଁ । ଶହୀଦ ଲକ୍ଷ୍ମଣ ନାୟକ ଉପନ୍ୟାସଟିର ରଚନା ପାଇଁ ଲେଖକ ବିଭିନ୍ନ ସରକାରୀ ନଥିପତ୍ର Gazetteers ସରକାରୀ କର୍ମଚାରୀଙ୍କ ବିବରଣୀ ତଥା ଲକ୍ଷ୍ମଣ ନାୟକଙ୍କ ସହକର୍ମୀମାନଙ୍କ ସାକ୍ଷାତକାର ଦ୍ୱାରା ସଂଗୃହିତ ନିଛକ ସତ୍ୟ ତଥ୍ୟକୁ ନେଇ ପରିକଳ୍ପନା କରିଥିବାରୁ ଏହା ଏକ

ଐତିହାସିକ ଚରିତଧର୍ମୀ ଉପନ୍ୟାସ ଭାବେ ଗୌରବ ଲାଭ କରିପାରିଛି । ଏତଦ୍‌ଭିନ୍ନ ଗାନ୍ଧୀ ଆଦର୍ଶର ମହତ୍ତ୍ୱ ପ୍ରତିଷ୍ଠା ପାଇଁ ଔପନ୍ୟାସିକଙ୍କ ଦ୍ୱାରା ପ୍ରୟାସ କରାଯାଇଛି । ଅବିଭକ୍ତ କୋରାପୁଟ ଜିଲ୍ଲାର ସରଳ ନିରାଡମ୍ବର ଆଦିବାସୀମାନଙ୍କ ଜୀବନଚର୍ଯ୍ୟା ଔପନ୍ୟାସିକଙ୍କ ଲେଖନୀରେ ପ୍ରାଣସ୍ପର୍ଶୀ ହୋଇଉଠିଛି । ସ୍ୱଭାବରେ ଏହି ଗୁରୁଜନମାନେ ସରଳ ଓ ଅସାମାଜିକ ହେଲେ ବି ପରାଧୀନତାକୁ ଆଦୌ ପସନ୍ଦ କରନ୍ତି ନାହିଁ । ନିଜ ପରମ୍ପରା ଓ ସଂସ୍କୃତିକୁ ମନଭରି ଭଲପାଉଥିବା କୋରାପୁଟ ଆଦିବାସୀ ଜନସାଧାରଣଙ୍କ ପ୍ରାକୃତିକ ଜୀବନଶୈଳୀ ଚମତ୍କାର ବର୍ଣ୍ଣନା ଉପନ୍ୟାସଟିକୁ ସୁଖପାଠ୍ୟ କରେଇବାରେ ସହାୟକ ହୋଇଛି । ସହୀଦ ଲକ୍ଷ୍ମଣ ନାୟକ ଉପନ୍ୟାସଟି ଏକ ଚରିତ ଉପନ୍ୟାସ ହୋଇଥିବାରୁ ଏଥିରେ ପରିକଳ୍ପିତ ଚରିତ୍ରମାନଙ୍କ ଗୁରୁତ୍ୱ ଓ ବିଶେଷତ୍ୱ ପ୍ରତିପାଦନ ଲେଖକଙ୍କ ପାଇଁ ବହୁତ ବଡ଼ ଚାଲେଞ୍ଜ ହେଲେ ବି ଔପନ୍ୟାସିକ ଶ୍ରୀନନ୍ଦ ପ୍ରତ୍ୟେକ ଚରିତ୍ରକୁ ନିଜ ପ୍ରତିଭାର ଯାଦୁକରି ସ୍ପର୍ଶରେ ଜୀବନ୍ତ କରି ଗଢ଼ିତୋଳିଛନ୍ତି । ଲକ୍ଷ୍ମଣ ନାୟକ ଏହି ଉପନ୍ୟାସର କେନ୍ଦ୍ରୀୟ ଚରିତ୍ର ଭାବେ ପରିକଳ୍ପିତ । ମୁଖ୍ୟ ଚରିତ୍ରର ବିକାଶ ପାଇଁ ଯେଉଁ କେତୋଟି ସହାୟକ ଚରିତ୍ରର ଉପସ୍ଥାପନା କରାଯାଇଛି, ସେଗୁଡ଼ିକ ଆଦୌ କଳ୍ପନା ପ୍ରସୁତ ନୁହେଁ । ପ୍ରମୁଖ ଘଟଣା ସହ ଆନୁଷଙ୍ଗିକ ଘଟଣାଗୁଡ଼ିକ ମଧ୍ୟରେ ସୁସମନ୍ୱୟ ରକ୍ଷାକରି ଏଭଳି ଉପସ୍ଥାପନା କରାଯାଇଛି ଯେ, ମନେହୁଏ ପ୍ରତ୍ୟେକ ଘଟଣା ଗୋଟିଏ ମାଳାର ଅବିଚ୍ଛେଦ୍ୟ ଅଙ୍ଗ । ଲେଖକ ନିଜେ କୋରାପୁଟ ଅଞ୍ଚଳର ଆଦିବାସୀମାନଙ୍କ ଚାଲିଚଳଣୀ ବେଶଭୂଷା ସମ୍ବନ୍ଧୀୟ ପ୍ରତ୍ୟକ୍ଷ ଅନୁଭୂତି ଥିଲା । ତେଣୁ ଆଦିବାସୀମାନଙ୍କ ଜୀବନଚିତ୍ର ତଥା ଉପନ୍ୟାସର ଚରିତ୍ରଚିତ୍ରଣ କଲାବେଳେ ସେହି ଅନୁଭୂତି ଅନେକାଂଶରେ ସହାୟକ ହୋଇଛି । କଥାବସ୍ତୁର ସୁପରିକଳ୍ପନା ଯଥାଯଥ ଘଟଣା ବିନ୍ୟାସ ଅଭିନବ ଚରିତ୍ରଚିତ୍ରଣ, ସୁନିପୁଣ ବର୍ଣ୍ଣନାଶୈଳୀ, ପାତ୍ରୋଚିତ ମୌଖିକ ଭାଷା ବ୍ୟବହାର ସର୍ବପରି ବିଚକ୍ଷଣ କଥା କାରିଗରୀ ଦ୍ୱାରା ଶ୍ରୀନନ୍ଦ ଆଲୋଚ୍ୟ ଉପନ୍ୟାସକୁ ରସତୀର୍ଣ୍ଣ କରି ଗଢ଼ିତୋଳିଛନ୍ତି ।

ଏହି ରସସ୍ରାବୀ ସ୍ରଷ୍ଟାଙ୍କ ଲେଖନୀମୂନରୁ ଏକବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ଜନ୍ମ ନେଇଥିଲା 'ଗଢ଼ିବାର ସ୍ୱପ୍ନ' ନାମକ ଆଉ ଏକ ଚରିତ ଉପନ୍ୟାସ ୧୯୦୩ ମସିହାରେ 'ବର୍ଣ୍ଣିକା' ପତ୍ରିକାର ବାର୍ଷିକ ସଂଖ୍ୟାରେ ପୃଷ୍ଠାମଣ୍ଡନ କରିଥିବା ଏହି ଉପନ୍ୟାସଟି ମସିହାରେ ପ୍ରଥମେ ପୁସ୍ତକ ଆକାରରେ ପ୍ରକାଶସ୍ଥିତ ହୋଇଥିଲା । ଆତ୍ମକଥନଶୈଳୀରେ ରଚିତ ଆଲୋଚ୍ୟ ଉପନ୍ୟାସରେ କଥାଶିଳ୍ପୀ ଦାଶରଥି ନନ୍ଦଙ୍କ ବୃତ୍ତିଗତ ଓ ସାରସ୍ୱତ ଜୀବନର ଅଙ୍ଗେ ନିଭା ଅନୁଭୂତିକୁ ନେଇ ପରିକଳ୍ପିତ ହୋଇଛି । ଏହି ଦୃଷ୍ଟିକୋଣରୁ ଗଢ଼ିବାର ସ୍ୱପ୍ନ ହେଉଛି କଥାକାରଙ୍କ ଏକ ଆତ୍ମଚରିତଧର୍ମୀ ଅଭିନବ କଳାକୃତି। ଜୀବନ ଓ ଜଗତକୁ ମନଭରି ଭଲପାଉଥିବା ଏହି ସୃଜନ ସାଧକ କେବେବି ପାଠକ ମନରେ କ୍ଷଣିକ ଉନ୍ମାଦନା କିମ୍ବା ଅବସର ବିନୋଦନ ପାଇଁ ସାହିତ୍ୟ ସର୍ଜନା କରିନାହାନ୍ତି । ସତେଯେମିତି ତାଙ୍କ ପ୍ରତିଟି ସୃଷ୍ଟିରେ ଅଛି ଜୀବନ ଜିଇଁବାର ଅଭିନବ କଳା । ଏହି ପ୍ରସଙ୍ଗରେ ସମୀକ୍ଷକ ବାଉରୀବନ୍ଧୁ କରଙ୍କ ମନ୍ତବ୍ୟ ହେଲା-"ସେ କେବଳ ଅବସର ବିନୋଦନ ସାମଗ୍ରୀ ରୂପେ ଉପନ୍ୟାସ ଲେଖିନାହାନ୍ତି । ଅଧିକନ୍ତୁ ତାଙ୍କ ଉପନ୍ୟାସ ଭିତରେ ଜଗତ ଓ ଜୀବନର ମର୍ମବାଣୀ ହୋଇଛି ଅନୁରଣିତ । ତାଙ୍କ ଉପନ୍ୟାସରେ ସେ ମଣିଷ ପଣିଆର ମୂଳ ଖୋଜିଛନ୍ତି ଓ ଜୀବନ ଜିଜ୍ଞାସାର ସ୍ୱୟଂସମୃଦ୍ଧ ରୂପ ପ୍ରକଟ କରିବାକୁ ସଙ୍କେତବୋଧ କରିନାହାନ୍ତି।" (ଗଢ଼ିବାର ସ୍ୱପ୍ନ-ଭୂମିକା ପୃ-୬୩୬) ପାରମ୍ପରିକ ଶୈଳୀରେ ଉପନ୍ୟାସ ରଚନା କରିବାକୁ ନାପସନ୍ଦ କରୁଥିବା ଏହି କଥାଶିଳ୍ପୀଙ୍କ ପ୍ରତ୍ୟେକଟି କୃତିରେ ଅଛି କିଛି ନିଆରା କରିବାର ଅଭିନବ ପ୍ରୟାସ । ସେହି ପ୍ରଚେଷ୍ଟା ହିଁ ଔପନ୍ୟାସିକ ଶ୍ରୀନନ୍ଦଙ୍କୁ ଆଣିଦେଇଛି ଏକ ସ୍ୱତନ୍ତ୍ର ପରିଚିତି । ଏହି ମର୍ମରେ 'ଗଢ଼ିବାର ସ୍ୱପ୍ନ' ହେଉଛି ସେହି ନିଆରା ପଣିଆର ଏକ ବଳିଷ୍ଠ ଆଲେଖ୍ୟ ।

"ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁଦେବ ମହେଶ୍ୱର
ଗୁରୁ ସାକ୍ଷତ୍ ପରଂବ୍ରହ୍ମ ତସ୍ମୈଶ୍ରୀ ଗୁରୁବେ ନମଃ ।"

ଭାରତୀୟ ପରମ୍ପରାରେ ଗୁରୁଙ୍କ ସ୍ଥାନ ସକଳ ଦେବ-ଦେବୀଙ୍କଠାରୁ ଉର୍ଦ୍ଧ୍ୱରେ । ଅଜ୍ଞାନର ଅନ୍ଧକାର ମଧ୍ୟରେ ମଣିଷ ସମାଜକୁ ମୁକ୍ତି କରି ଜ୍ଞାନର ଆଲୋକରେ ଉଦ୍ଭାସିତ କରୁଥିବା ଏହି ଗୁରୁଙ୍କ ମହିମା ବଖାଣିବାର ଆମ ପ୍ରଥା, ପରମ୍ପରା, ବେଦ, ଉପନିଷଦ, ପୁରାଣ, ଶାସ୍ତ୍ରାଦି କେବେବି କୁଣ୍ଠାବୋଧ ପ୍ରକାଶ କରିନାହିଁ । ପବିତ୍ର ଗୁରୁଶିଷ୍ୟ ପରମ୍ପରା ମହାନ୍ ଭାରତବର୍ଷ ବ୍ୟତୀତ ପୃଥିବୀର ଅନ୍ୟ କୌଣସି ଦେଶରେ ଦେଖିବା ଅତ୍ୟନ୍ତ ବିରଳ । ସୁତରାଂ ମଣିଷକୁ ଶିକ୍ଷିତ ହେବା ଗୁରୁଶିକ୍ଷା, ଗୁରୁଦିକ୍ଷା, ଗୁରୁ ଆଶୀର୍ବାଦ ଆବଶ୍ୟକ । ସେହିପରି ସାରସ୍ୱତ ସାଧକ ପାଇଁ ଗୁରୁଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏକଲବ୍ୟ ଯେଉଁଭଳି ମାଟିର ଦ୍ରୋଣ ପ୍ରତିଷ୍ଠା କରି ଅସ୍ତ୍ରବିଦ୍ୟା ସାଧନା କରିଥିଲେ । ଠିକ୍ ସେହିଭଳି ପ୍ରତ୍ୟେକ ସାରସ୍ୱତ ସାଧକ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ସଚେତନରେ ହେଉ ଯେ ବା ଅବଚେତନ ହେଉ, ଅଥବା ସ୍ୱପ୍ନରେ ହେଉ ବା ଜାଗରଣରେ ହେଉ କୌଣସି ଜଣେ ପ୍ରତିଷ୍ଠିତ ସାହିତ୍ୟିକଙ୍କୁ ନିଜ ପଥପ୍ରଦର୍ଶକ ଭାବେ ଗ୍ରହଣ କରିଥାନ୍ତି । ଆମ ସାହିତ୍ୟ ଜଗତରେ ଏଭଳି ଦୃଷ୍ଟାନ୍ତ ଆଦୌ ବିରଳ ନୁହେଁ । ମାଟିର ମହାକବି ସାରଳା ଦାସଙ୍କପାଇଁ ବ୍ୟାସକବି ଦିଗ୍‌ଦର୍ଶକ ସାଜିଥିବାବେଳେ ପଞ୍ଚସଖାଯୁଗୀୟ ସାହିତ୍ୟ ସାଧକ ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ସାହିତ୍ୟ ସାଧନ ପାଇଁ ସାରଳା ଦାସ ପାଲଟି ଯାଇଛନ୍ତି ସାରସ୍ୱତ ଗୁରୁ । ଅନୁରୂପ ଭାବେ କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମାଙ୍କ ପଦାଚରଣ କରି ଅଭିମନ୍ୟୁ ସାମନ୍ତସିଂହାର ନିରଳସ କବିତ୍ୱ ପ୍ରଦର୍ଶିତ କରୁଥିବାବେଳେ ଏ ମାଟିର କବି ସମ୍ରାଟ ଆପଣା ପିତାମହଙ୍କୁ ସାହିତ୍ୟ ସାଧନାର ଗୁରୁଭାବେ ଗ୍ରହଣ କରିଥିବା କାହାକୁ ଅଛପା ନାହିଁ । ଆଧୁନିକ ସାହିତ୍ୟରେ ମଧ୍ୟ ତଦନୁରୂପ ପ୍ରଥିତଯଶା ସାହିତ୍ୟିକମାନଙ୍କୁ ନୂତନପିଢ଼ିର ସ୍ରଷ୍ଟାମାନେ ସାହିତ୍ୟିକ ଗୁରୁ ଦିଗ୍‌ଦର୍ଶନ ତଥା ଆଦର୍ଶଭାବେ ଗ୍ରହଣ କରିଆସିଛନ୍ତି । ସେହିଭଳି ଏକ ନିଆରା ସାହିତ୍ୟିକ ଗୁରୁଶିଷ୍ୟ ପରମ୍ପରା କାହାଣୀକୁ ଭିତ୍ତିକରି 'ଗଢ଼ିବାର ସ୍ୱପ୍ନ' ଉପନ୍ୟାସର ପରିକଳ୍ପନା କରାଯାଇଛି । ଔପନ୍ୟାସିକ ଦାଶରଥି ନନ୍ଦ ବିଂଶ ଶତାବ୍ଦୀର ବଳିଷ୍ଠ କଥାଶିଳ୍ପୀ ଗୋପୀନାଥ ମହାନ୍ତିଙ୍କୁ ସାହିତ୍ୟିକ ଗୁରୁରୂପେ ଗ୍ରହଣକରି ଉପନ୍ୟାସ ରଚନା କରିବାରେ କିଭଳି ସମର୍ଥ ହେଲେ ତା'ର ହୃଦୟସ୍ପର୍ଶୀ କଳାମଞ୍ଜୁଳ ପରିପ୍ରକାଶ ହେଉଛି 'ଗଢ଼ିବାର ସ୍ୱପ୍ନ' ଉପନ୍ୟାସ । 'ଗଢ଼ିବାର ସ୍ୱପ୍ନ' ଉପନ୍ୟାସଟି ଆତ୍ମପ୍ରକ୍ଷେପଧର୍ମୀ ବ୍ୟକ୍ତି ନିର୍ଭର ଶୈଳୀରେ ରଚିତ ଏକ ଉପନ୍ୟାସ । ଆଲୋଚ୍ୟ ଉପନ୍ୟାସରେ ଲେଖକଙ୍କ ଜୀବନ୍ତ ଅନୁଭୂତି, ବିପୁଳ ଅଭିଜ୍ଞତା ସହିତ ସୁଗଭୀର ଜୀବନବାଦୀ ଦୃଷ୍ଟିକୋଣରୁ ମଧୁର ସମନ୍ୱୟ ଘଟିଛି । ଯାନ୍ତ୍ରିକ ଜୀବନର ଗୋଲକଧନ୍ଦା ମଧ୍ୟରେ ଛନ୍ଦି ହୋଇପଡ଼ିଥିବା ସୃଷ୍ଟିସ୍ରାବୀ ସ୍ରଷ୍ଟାପ୍ରାଣଟି ସାହିତ୍ୟର ଅମୃତଧାରା କ୍ଷରଣ ପାଇଁ କିଭଳି ଅହରହ ମାନସିକ ଯନ୍ତ୍ରଣାର ଶରବ୍ୟ ହୋଇପଡ଼ିଛି ତଥା ମୁକ୍ତି ପାଇଁ ନିର୍ଭିକତାର ସହ ସକଳ ବାଧାବିଘ୍ନକୁ ଏଡ଼ାଇ ସାହିତ୍ୟର ଅନନ୍ତ ଦିଗ୍‌ବଳୟରେ ନିଜକୁ ନିମଜ୍ଜିତ କରିଛନ୍ତି, ତା'ର ମାର୍ମିକ ଚିତ୍ର ଆଲୋଚ୍ୟ ଉପନ୍ୟାସରେ ଆମେ ଦେଖିବାକୁ ପାଉ । ଉପନ୍ୟାସର କଥାବସ୍ତୁ ସୃଜନଶୀଳ

ସାହିତ୍ୟିକ ହେବାର ଦୁର୍ବାର ଅଭିପ୍ସା ଏବଂ ଗୁରୁ ଗୋପୀନାଥଙ୍କ ନିର୍ଦ୍ଦେଶିତ ମାର୍ଗରେ ଅସୀମ ଧୈର୍ଯ୍ୟ ଓ ସାହାସ ସହ ଯାତ୍ରାକରି ଅବଶେଷରେ ସମାନ ହୋଇଥିବା ସ୍ରଷ୍ଟା ଜୀବନର ଆବେଗପୁଲକ ଭରା ତଥା ଅନେକତ୍ର ରୋମାଞ୍ଚକର ନିଛକ ସତ୍ୟ ଘଟଣାକୁ ଆଧାର କରି ଗତିଶୀଳ ହୋଇଛି । ଏ ପ୍ରସଙ୍ଗରେ ସ୍ୱଂୟ ଲେଖକଙ୍କର ସ୍ୱୀକାରୋକ୍ତି ହେଲା- "ମୋ ସାହିତ୍ୟଗୁରୁ ଗୋପୀନାଥ ମହାନ୍ତି ମୋ ପରି ଜଣେ ଅନାମଧେୟ ଯନ୍ତ୍ରୀକୁ ଏକ ସଫଳ ଉପନ୍ୟାସ ରଚୟିତା କରିଛନ୍ତି ବୋଲି ଏବେ ତିରିଶ ବର୍ଷପରେ ସମାଲୋଚକମାନେ କହନ୍ତି ଏବଂ ତା ପାଇଁ ସେ ଓ ମୁଁ ଯେଉଁ କଠିନ ଅଧ୍ୟବସାୟ କରିଛୁ, ତା'ର ନିଛକ ସତ୍ୟ ବିବରଣୀ ହେଉଛି ଗଢିବାର ସ୍ୱପ୍ନ" (ପଦେ ଅଧେ) ଏହି ଉପନ୍ୟାସରେ ପ୍ରେମ ପ୍ରଣୟଧର୍ମୀ ଚିରାଚରିତ ଉପନ୍ୟାସ ଶୈଳୀକୁ ସଚେତନତାର ସହ ପରିହାର କରି ଲେଖକ ନିଜ ଘଟଣାବହୁଳ ଜୀବନ କାହାଣୀକୁ ଉପନ୍ୟାସର କଳାବିଭବରେ ରୂପାନ୍ତିରିତ କରିଛନ୍ତି। ଲେଖକଙ୍କ ଦୀର୍ଘ ୩୦ବର୍ଷର ବୃତ୍ତିଗତ ଓ ସାହିତ୍ୟିକ ଜୀବନର ବିବିଧ ଘଟଣାବଳୀ କାର୍ଯ୍ୟକାରଣ ଶୈଳୀରେ ସଂଯୋଜିତ ହୋଇ ଉପନ୍ୟାସର ଆତ୍ମିକ ସୌନ୍ଦର୍ଯ୍ୟକୁ ଉତ୍କର୍ଷ ପ୍ରଦାନ କରିଛି। ଗୋପୀନାଥଙ୍କ ପ୍ରତିଭାର ପରଶୁ ସ୍ପର୍ଶରେ ଇଂଜିନିୟର ଦାସରଥି ନନ୍ଦ ଜଣେ କୃତବିଦ୍ୟା ଔପନ୍ୟାସିକ ହେବାର ଜୟଯାତ୍ରାମୂଳକ ଏହି ଉପନ୍ୟାସ ଏକ ସମୟୋଚିତ ସୃଷ୍ଟି । ଗୋପୀନାଥଙ୍କ ସହ ଲେଖକଙ୍କ ବ୍ୟକ୍ତିଗତ ସାକ୍ଷାତକାରରୁ ଆରମ୍ଭ ହୋଇଥିବା ଏହି ଉପନ୍ୟାସର କଥାଭାଗ ପର୍ଯ୍ୟାୟକ୍ରମେ ତତ୍କାଳୀନ ଓଡ଼ିଶା ଇଂଜିନିୟରିଂ ସଂଘର ସମ୍ପାଦକ ଭାବେ ଦାୟିତ୍ୱ ନିର୍ବାହ, ସମାଜର ସମ୍ପାଦକଙ୍କ ସହ ବିତର୍କ, ସମକାଳୀନ ଡ଼ିଗ୍ରୀଧାରୀ ଯୁବଗୋଷ୍ଠୀର ବେକାର ସମସ୍ୟାକୁ ଭିତ୍ତିକରି ପ୍ରବନ୍ଧ ମାଧ୍ୟମରେ ସ୍ୱର ଉତ୍ତୋଳନ, ରାଧାନାଥ ରଥଙ୍କ ଆହ୍ୱାନ ଅନୁଯାୟୀ ଉପନ୍ୟାସ ରଚନା ପାଇଁ ପ୍ରସ୍ତୁତି ତାଙ୍କ ସାହିତ୍ୟିକ ପ୍ରତିଭାର ସୁପରିଚାଳନା ପାଇଁ ଗୋପୀନାଥ ମହାନ୍ତିଙ୍କ ହସ୍ତକ୍ଷେପ ଓ ପରାମର୍ଶ, ଗୋପୀନାଥଙ୍କ ଦ୍ୱାରା ଲେଖକଙ୍କ ଧୈର୍ଯ୍ୟ ପରୀକ୍ଷା, ସମସାମୟିକ ଓଡ଼ିଆ ସାହିତ୍ୟ ସହ ପରିଚିତ ହେବା ପାଇଁ ଗୋପୀନାଥଙ୍କ ପରାମର୍ଶ ଏବଂ ଶେଷରେ ଜଣେ ସଫଳ ଔପନ୍ୟାସିକ ଭାବେ ଶ୍ରୀନନ୍ଦଙ୍କ ଆବିର୍ଭାବ ପ୍ରଭୃତି ଘଟଣା ବିଷୟବସ୍ତୁକୁ ନେଇ ଆଲୋଚ୍ୟ 'ଗଢିବାର ସ୍ୱପ୍ନ' ଉପନ୍ୟାସର ପ୍ଲଟ ପରିକଳ୍ପାନା କରାଯାଇଛି । ବାସ୍ତବରେ କହିବାକୁ ଗଲେ ଗତ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଶାରେ ଘଟିଥିବା ବୈଦିକ ଓ ସାହିତ୍ୟିକ ବିବର୍ତ୍ତନଧାରାର ଏକ କଳାତ୍ମକ ଅଭିବ୍ୟକ୍ତି ହେଉଛି 'ଗଢିବାର ସ୍ୱପ୍ନ' ଉପନ୍ୟାସ। ସତେଯେପରି ଲେଖକ ନିଜ ହୃଗୁଳା ମନରେ ମୁକୁଳା କଥା ପାଠକମାନଙ୍କ ପାଇଁ ଅଜାଡି ଦେଇଛନ୍ତି ଏହି ଉପନ୍ୟାସର ପ୍ରତିଟି ପୃଷ୍ଠାରେ । ଆଜିର ଉପଭକ୍ତାବାଦୀ ସମାଜର ବ୍ୟକ୍ତିକୈନ୍ଦ୍ରିକ ମଣିଷ ନିଜ ସ୍ୱାର୍ଥ ଓ ଭୋଗବାଦୀ ଦୃଷ୍ଟିକୋଣର ପରିତୃପ୍ତି ପାଇଁ ନିଜ ସହ ଅହରହ ସଂଗ୍ରାମ କରିଚାଲିଥିବା ବେଳେ, ଜୀବନ ଓ ସମାଜ ପାଇଁ ଜିଇଁଥିବା ଭଳି ଏକ ନିରଳସ ସାଧକଙ୍କର ସଂଘର୍ଷମୟ ଜୀବନ କାହାଣୀ ସେହି ଅପରିମିତ ସ୍ୱାର୍ଥାନ୍ଧ ବସ୍ତୁବାଦୀ ମଣିଷକୁ ଅନ୍ୟପାଇଁ ଏକ ନୂତନ ରାହା ଯୋଗାଇଆସିଛି । ସାହିତ୍ୟ ସାଧନାକୁ ନେଇ ଆମ ସମାଜରେ ପ୍ରଚଳିତ ବିଭିନ୍ନ ବିକୃତ ବଞ୍ଚିଚାର ଓ ଦୃଷ୍ଟିକୋଣକୁ ସଂସ୍କାରିତ କରି ଏକ ସୁସ୍ଥ ସାରସ୍ୱତ ମାନସିକତା ସୃଷ୍ଟି ପାଇଁ ଏହି ଉପନ୍ୟାସ କେତେକାଂଶରେ ସହାୟକ ହୋଇଛି । ଦୃଢ ଇଚ୍ଛାଶକ୍ତି, ଅପାର ଚେଷ୍ଟା, ଗଭୀର ସଂକଳ୍ପ, ନିଜପ୍ରତି ଅତୁଟ ବିଶ୍ୱାସ ଆଗରେ ସକଳ ବାଧାବିଘ୍ନ କିଭଳି ତୁଚ୍ଛ ଓ ମୂଲ୍ୟହୀନ ତାହା ଗଢିବାର ସ୍ୱପ୍ନ ଉପନ୍ୟାସରେ ଆମେ ଦେଖିବାକୁ ପାଉ । ଏହି ଉପନ୍ୟାସଟି ନୂତନ ପିଢିର ତରୁଣ ଲେଖକମାନଙ୍କୁ ସାରସ୍ୱତ ସାଧନ ପାଇଁ ପ୍ରେରିତ କରିଆସିଛି । ଔପନ୍ୟାସିକଙ୍କ ପ୍ରତିଟି କଳାକୃତି ଏକ ସ୍ୱତନ୍ତ୍ର ଲକ୍ଷ୍ୟ ଓ ନିର୍ଦ୍ଦିଷ୍ଟ ଆଭିମୁଖ୍ୟକୁ ନେଇ ସୃଷ୍ଟି ହୋଇଛି । ତେଣୁ ତାଙ୍କ ଉପନ୍ୟାସଗୁଡ଼ିକରେ ଗତାନୁଗତିକ ବିଷୟବସ୍ତୁ କିମ୍ବା ଚିରାଚରିତ ଉପନ୍ୟାସଶୈଳୀର ବ୍ୟବହାର ଦେଖିବାକୁ ପାଇବା ନାହିଁ । ଜୀବନର ଅଙ୍ଗେନିଭା ଅନୁଭୂତି ଯାହା ନିରାଟ ସତ୍ୟ ଓ ବାସ୍ତବ ତାହାହିଁ କଳାତ୍ମକ ରୂପ ପାଇଥାଏ ତାଙ୍କ ପ୍ରତିଟି ରଚନାରେ । ସତେଯେଭଳି ଲେଖକ ସାହିତ୍ୟ ମାଧ୍ୟମରେ ମଣିଷ ଜୀବନର ଗଭୀରତମ ସତ୍ୟକୁ ଉନ୍ମୋଚିତ କରିବାକୁ ଚାହାନ୍ତି । ସମଗ୍ର ଉପନ୍ୟାସଟି ହେଉଛି ଇଂଜିନିୟର ଦାଶରଥି ନନ୍ଦଙ୍କ ସାହିତ୍ୟିକ ଜୀବନର ଇତିବୃତ୍ତ । ତେଣୁ ଏଥିରେ ବ୍ୟଷ୍ଟି ଚେତନା ଅପେକ୍ଷା ବ୍ୟକ୍ତି ଚେତନା ହିଁ ପ୍ରାଧାନ୍ୟ ଲାଭ କରିଛି । ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ସାରସ୍ୱତ ଜୀବନର ବିବିଧ ଘଟଣାକୁ ଶ୍ରୀନନ୍ଦ ନିଜ ଜୀବନର ଘଟଣା ସହ ଚମତ୍କାର ସମନ୍ୱୟ ଘଟାଇ ଉପନ୍ୟାସଟିକୁ ଏଭଳି କଳାତ୍ମକ ରୂପ ଦେଇଛନ୍ତି ଯେ ରଚନାଟି ପ୍ରଚାରଧର୍ମୀ ନହୋଇ ଏକ ସାର୍ଥକ ଉପନ୍ୟାସର ମର୍ଯ୍ୟାଦା ଲାଭ କରିଛି । ଜଣେ ଯାନ୍ତ୍ରୀକ ମନରେ ବହୁବର୍ଷ ଧରି ସାହିତ୍ୟ ଗଢ଼ିବାର ଯେଉଁ ଅସୁମାରି ସ୍ୱପ୍ନ ଉଙ୍କିମାରିଥିଲା, ତାହା କିପରି ଆଉ ଏକ ସାରସ୍ୱତ ପ୍ରତିଭାର କାଉଁରୀ ସ୍ପର୍ଶରେ ବାସ୍ତବ ରୂପ ଲାଭ କରିଛି, ଏହି ପ୍ରସଙ୍ଗ ଆଲୋଚ୍ୟ ଉପନ୍ୟାସର ମୁଖ୍ୟ ଅବଲମ୍ବନ ହୋଇଥିବାରୁ ଗଢିବାର ସ୍ୱପ୍ନ ନାମକରଣଟି ଖୁବ୍ ଯଥାର୍ଥ ମନେ ହୁଏ । ଏତଦ୍‌ଭିନ୍ନ ଆଲୋଚ୍ୟ ଉପନ୍ୟାସରେ କଥାଶିଳ୍ପୀ ଗୋପୀନାଥ ମହାନ୍ତିଙ୍କ ସାହିତ୍ୟିକ ଜୀବନରେ ଏକ ନୂତନ ଅଧ୍ୟାୟ ଉନ୍ମୋଚିତ କରାଯାଇଛି । ସେ ଜଣେ ସମ୍ବେଦନଶୀଳ ଦରଦୀ ଲେଖକ ନ ଥିଲେ ଅଧିକନ୍ତୁ ନୂତନ ପ୍ରତିଭାର ଅନ୍ୱେଷୀ ମଧ୍ୟ ଥିଲେ । ତେଣୁ ତ ଜଣେ ବୈଷୟିକ ଡିଗ୍ରୀଧାରୀ ଇଞ୍ଜିନିୟର ପାଖରେ ସାହିତ୍ୟର ଅମୃତଧାରାକୁ ଆବିଷ୍କାର କରିପାରିଥିଲେ । ସୁତରାଂ 'ଗଢିବାର ସ୍ୱପ୍ନ' ଉପନ୍ୟାସ ରଚିତ ହୋଇ ନଥିଲେ ଆମେ ଗୋପୀନାଥଙ୍କ ଏହି ନିଆରା ବ୍ୟକ୍ତିତ୍ୱ ସମ୍ପର୍କରେ ଆଦୌ ପରିଚିତ ହୋଇପାରିନଥାନ୍ତି । ତେଣୁ 'ଗଢିବାର ସ୍ୱପ୍ନ' ଉପନ୍ୟାସ କେବଳ ଦାଶରଥି ନନ୍ଦଙ୍କ ସାରସ୍ୱତ ଜୀବନ କାହାଣୀ ନୁହେଁ, ଏହା କଥାକାର ଗୋପୀନାଥ ମହାନ୍ତିଙ୍କ ସାହିତ୍ୟିକ ଜୀବନର ଏକ ଐତିହାସିକ ଦଲିଲ୍ ମଧ୍ୟ ।

ଘଟଣା ପ୍ରଧାନ ତଥା ଚରିତଧର୍ମୀ ଉପନ୍ୟାସ ବ୍ୟତୀତ ଔପନ୍ୟାସିକ ଶ୍ରୀନନ୍ଦ 'ଦଣ୍ଡଧାରୀ' ନାମକ ଖଣ୍ଡିଏ ବ୍ୟଙ୍ଗ ଉପନ୍ୟାସ ରଚନା କରିଛନ୍ତି । ଉକ୍ତ ଉପନ୍ୟାସଟି ୨୦୦୬ ମସିହାରେ ରଚିତ ହୋଇ 'ବର୍ତ୍ତିକା' ପତ୍ରିକାର ବାର୍ଷିକ ସଂଖ୍ୟାରେ ପ୍ରକାଶିତ ହୋଇ ୨୦୦୭ ମସିହାରେ ପ୍ରଥମେ ପୁସ୍ତକ ଭାବେ ଆତ୍ମପ୍ରକାଶ ଲାଭ କରିଥିଲା । ଅବଶ୍ୟ ଲେଖକଙ୍କ ଦ୍ୱାରା ଏହି ଉପନ୍ୟାସର ପ୍ରସ୍ତୁତି ୧୯୭୪ ମସିହାରୁ ହୋଇସାରିଥିଲା । ଔପନ୍ୟାସିକ ଶ୍ରୀନନ୍ଦ ଚାକିରି ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟରେ ଭୁବନେଶ୍ୱର ରହଣୀକାଳୀନ ପୁଞ୍ଜିଭୂତ କିଛି ପ୍ରତ୍ୟକ୍ଷ ଅନୁଭୂତିକୁ ପାଥେୟକରି ଏହି ଉପନ୍ୟାସରେ ବିଷୟବସ୍ତୁ ପରିକଳ୍ପନା କରିଛନ୍ତି । ୧୯୬୫ ମସିହାରେ ତତ୍କାଳୀନ କଳାହାଣ୍ଡି ଜିଲ୍ଲାରେ ଦେଖା ଦେଇଥିବା କରାଳ ଦୁର୍ଭିକ୍ଷର ପୃଷ୍ଠଭୂମିରେ ଦୁର୍ଭିକ୍ଷ ମୁକାବିଲା ଜନିତ ସରକାରୀ କଳର ଉଦାସୀନତା ତଥା କର୍ମଚାରୀମାନଙ୍କ ଶଠତା ଓ ପ୍ରବଞ୍ଚନାର ନିର୍ମମ ଚିତ୍ର ଖୁବ୍ ଶାଣିତଭାବେ ରୂପଲାଭ କରିଛି । ସ୍ୱାଧୀନତା ପରବର୍ତ୍ତୀ କାଳୀନ ଓଡ଼ିଆ ଉପନ୍ୟାସରେ ମାନବିକତାର ନିଷ୍ଠୁର ସତ୍ୟ ଉଚ୍ଚାରଣ ଏପରି ନିର୍ଭୀକ ଓ ସ୍ୱଷ୍ଟସ୍ୱର କ୍ୱଚିତ୍ ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟରେ ଦୁର୍ଭିକ୍ଷ ସମ୍ପର୍କିତ ଉପନ୍ୟାସ ରଚନା

କରିବା ଆଦୌ ନୂଆ ନୁହେଁ । ପ୍ରଥମେ ଫକୀରମୋହନ ତାଙ୍କର ବିଭିନ୍ନ ରଚନାରେ ଦୁର୍ଭିକ୍ଷର ବିଭତ୍ସ ରୂପ ଆଙ୍କିସାରିଥିଲେ । ପରବର୍ତ୍ତୀ ସମୟରେ ମରୁଡ଼ିର ପୃଷ୍ଠଭୂମି ଉପରେ ପୀତାମ୍ବରୀ ଦେବିଙ୍କ 'କାନ୍ତାରା ବାବୁ', କାଳୀନ୍ଦୀଚରଣ ପାଣିଗ୍ରାହୀଙ୍କର 'ମୁକ୍ତାଗଡ଼ର କ୍ଷୁଧା' (୧୯୩୩) ଓ 'ଅମରଚିତା' (୧୯୩୩), କାହ୍ନୁଚରଣ ମାହାନ୍ତିଙ୍କ 'ହା ଅନ୍ନ', 'ଶାସ୍ତି', ରାମପ୍ରସାଦ ସିଂହଙ୍କ 'ହୋମ ଶିଖା' ଓ 'ସମାପ୍ତି', କୁଶ ବେହେରାଙ୍କ 'ନିୟତିର ଚକ' ସୋମେଶ୍ୱର ବେହେରାଙ୍କ 'ଅନ୍ଧାର ଘରରକଥା' ପ୍ରଭୃତି ଏହି ମର୍ମରେ ଏକ ଏକ ଉଲ୍ଲେଖନୀୟ ସୃଷ୍ଟି । ଏହି ଦୁର୍ଭିକ୍ଷ ସଂପର୍କିତ ପ୍ରତିଟି ଉପନ୍ୟାସରେ ମରୁଡ଼ିର କରାଳ ଚିତ୍ର ବର୍ଣ୍ଣନା ସହ ପ୍ରକୃତି ଆଗରେ ମଣିଷର ଅସହାୟତା, ମାନବିୟ ମୂଲ୍ୟବୋଧର ଅବକ୍ଷୟ, ଧନୀ, ଦରିଦ୍ର ମଧ୍ୟରେ ଶ୍ରେଣୀ ସଂଘର୍ଷ, ଶାସନକାଳର ଦୁରୁପଯୋଗ, କ୍ଷମତାଶାଳୀ ଲୋକଙ୍କ ସ୍ୱାର୍ଥପରତା ସର୍ବପରି ନୀତିଭ୍ରଷ୍ଟ ରାଜନେତାମାନଙ୍କ ପ୍ରବଞ୍ଚନାରେ ବିଭତ୍ସ ରୂପ ସ୍ଥାନପାଇଛି । ଦାଶରଥି ନନ୍ଦଙ୍କ ଦଣ୍ଡଧାରୀ ଉପନ୍ୟାସ ଏହି ପରିପ୍ରେକ୍ଷୀରେ ଏକ ଆଦର୍ଶ ସ୍ଥାନୀୟ ସୃଷ୍ଟି ।

ସ୍ୱଂୟ ଔପନ୍ୟାସିକ ଆଲୋଚ୍ୟ କଥାଗ୍ରନ୍ଥର ଆଭିମୁଖ୍ୟ ସମ୍ପର୍କରେ ଲେଖିଛନ୍ତି- "ଏହି ଉପନ୍ୟାସ ଲେଖାର ଉଦ୍ଦେଶ୍ୟ ହେଉଛି ସରକାରୀ କର୍ମଚାରୀମାନଙ୍କର ଦେଶର ସେବକ ଭାବେ କାମ କରିବା ଦୁର୍ଲଭ ସୁଯୋଗ ରହିଛି । ସେହି ମନୋବୃତ୍ତିକୁ ନେଇ କାମ କଲେ କୁପ୍ରବୃତ୍ତିର କବଳରେ ସେମାନେ ପଡ଼ିବେ ନାହିଁ ଏବଂ ଜନତାର ସେବା କରି ଅପାର ଆନନ୍ଦ ପାଇବେ । ନାଲିଫିତା ବା ବଡ଼ବଡ଼ିଆଙ୍କ ନାଲିଆଖି କର୍ତ୍ତବ୍ୟ ସାଧନରେ ଅନ୍ତରାୟ ହେବନାହିଁ ।" (ପଦେଅଧେ, ପୃ-୭୫୪) ଦାଶରଥି ନନ୍ଦଙ୍କ ପାଇଁ ଉପନ୍ୟାସ ରଚନା ଏକ ସୌଖୀନ ବିଳାସ ନୁହେଁ । ବରଂ, ଏହା ତାଙ୍କ ପାଇଁ ହେଉଛି ଜୀବନ ସାଧନା । ତେଣୁ କୌଣସି କଳ୍ପକଳ୍ପିତ କାହାଣୀକୁ ଉପନ୍ୟାସର କଥାବସ୍ତୁ ଭାବେ ଗ୍ରହଣ ନକରି ଅଙ୍ଗେନିଭାଇ ଥିବା ବାସ୍ତବ ଘଟଣା ତଥା ବିଷୟବସ୍ତୁର ଅନ୍ୱେଷଣ, ଅନୁଧ୍ୟାନ ଓ ଅନୁଶୀଳନ କରିଛନ୍ତି । ସେହି କାରଣରୁ ଔପନ୍ୟାସିକଙ୍କ ପ୍ରତିଟି ସୃଷ୍ଟି ଜୀବନ୍ତ ଅନୁଭୂତିର ଆଲେଖ୍ୟ ବହନ କରିଥାଏ । ଆଲୋଚ୍ୟ ଦଣ୍ଡଧାରୀ ଉପନ୍ୟାସ ହେଉଛି ଐତିହାସିକ ଘଟଣାର ପୃଷ୍ଠଭୂମି ଉପରେ ଆଧାରିତ ଏକ ସାମାଜିକ ଉପନ୍ୟାସ । ଓଡ଼ିଶାର ଜାତୀୟ ଜୀବନରେ ସଂଘଟିତ ୧୯୬୫-୬୬ ମସିହାର ଦାରୁଣ ଦୁର୍ବିପାକକୁ ମୂଳାଧାର କରି ଏହା ପ୍ରଣୀତ ହୋଇଥିଲେ ହେଁ, ଲେଖକ ଏଥିରେ ତତ୍କାଳୀନ କଳାହାଣ୍ଡି ତଥା ଓଡ଼ିଶାର ରାଜନୀତିକ ଓ ସାମାଜିକ ପରିସ୍ଥିତିକୁ ହିଁ କଳାତ୍ମକ ରୂପ ଦେଇଛନ୍ତି । ଉକ୍ତ ଉପନ୍ୟାସର କଥାଭାଗ ଦୁଇଟି ପର୍ଯ୍ୟାୟରେ ବିଭକ୍ତ । ପ୍ରଥମେ ମରୁଡ଼ିର କରାଳଚିତ୍ର ବର୍ଣ୍ଣନା ସହ ପରବର୍ତ୍ତୀ ପର୍ଯ୍ୟାୟରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଜନସାଧାରଣଙ୍କ ପ୍ରତି ସମକାଳୀନ ଓଡ଼ିଶାର ନେତୃବର୍ଗଙ୍କ ଦୃଷ୍ଟିଭଙ୍ଗୀ ଓ ଆଚରଣ ଯଥାର୍ଥ ପ୍ରତିଫଳନ ଘଟିଛି । ତେଣୁ ଚିରାଚରିତ ସାମାଜିକ ଓ ପାରିବାରିକ ଉପନ୍ୟାସ ଭଳି ଏଥିରେ ଧରାବନ୍ଧା ଉପଖ୍ୟାନ ବା କାହାଣୀ ବିବୃତ୍ତି ହୋଇନାହିଁ । ବରଂ ଏକ ବିଶେଷ ସମୟଖଣ୍ଡରେ ତଥା ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଗତିଶୀଳ ବିଡ଼ମ୍ବିତ ଜୀବନ ପ୍ରବାହର କଳାତ୍ମକ ଅଭିବ୍ୟକ୍ତି ଘଟିଛି । ଯାହାକୁ କି ଏହି ଉପନ୍ୟାସର କଥାବସ୍ତୁ ବୋଲି ଗ୍ରହଣ କରାଯିବ । ଦୁର୍ଭିକ୍ଷ ସମୟରେ ରାଜ୍ୟସରକାର ଓ ଅମଲାତନ୍ତ୍ରର ପ୍ରଚାରମୁଖ୍ୟ କାର୍ଯ୍ୟ ଓ ପ୍ରତାରଣାକୁ କଥାକାର ଏଠାରେ ବିଦ୍ରୁପ କରିଛନ୍ତି । କଳାହାଣ୍ଡିରେ ପରିଲକ୍ଷିତ ମରୁଡ଼ି ମୁଖ୍ୟ ଘଟଣା ସହ ତତ୍କାଳୀନ ଓଡ଼ିଶା ସରକାର ତଥା ପ୍ରଶାସନିକ କଳର ପ୍ରଚାରଧର୍ମୀ କାର୍ଯ୍ୟତତ୍ପରତା ପ୍ରଭୃତି ଘଟଣାସମୂହର ଯଥାଯଥ ବିନ୍ୟାସ ଦ୍ୱାରା ଉପନ୍ୟାସର ଭାବପକ୍ଷ ଉଚ୍ଚକୋଟିର ହୋଇପାରିଛି । ଏହି ଉପନ୍ୟାସର ବିଷୟ ସୌନ୍ଦର୍ଯ୍ୟର ଅନ୍ୟ ଏକ ବିଶେଷତ୍ୱ ହେଉଛି, କଳାହାଣ୍ଡି ମରୁଡ଼ି ସଂପର୍କିତ ବାସ୍ତବ ସତ୍ୟର ଉନ୍ମୋଚନ । ତତ୍କାଳୀନ ଗଣମାଧ୍ୟମଗୁଡ଼ିକରେ ଏହି ମରୁଡି ସମ୍ପର୍କିତ ଯାହାକିଛି ତଥ୍ୟ ବା ବିବରଣୀ ପ୍ରକାଶିତ ହୋଇଥିଲା ସେଗୁଡ଼ିକ କେତେକାଂଶରେ ରାଜନୀତିକ ଉଦ୍ଦେଶ୍ୟ ପ୍ରଣୋଦିତ ମନେହୁଏ । ସେମାନେ ନିଜେ ନିଜର ସ୍ୱାର୍ଥସିଦ୍ଧି ଓ ବାହାବାହା ପାଇଁ ବିଭିନ୍ନ ବିଭ୍ରାନ୍ତିକର ସମ୍ବାଦ ପରିବେଷଣ କରିଥିଲେ । କେବଳ ଏତିକି ନୁହେଁ, ଏହି ଘଟଣାକୁ ଭିତ୍ତିକରି ବହୁ ତଥାକଥିତ ସାହିତ୍ୟିକବର୍ଗ ଆପଣା ସୃଜନ ପ୍ରତିଭା ପ୍ରତିଷ୍ଠା ପାଇଁ ଏ ଉଦ୍ୟମ ମଧ୍ୟ କରିଥିଲେ । ଫଳରେ ଆଦିବାସୀ ଅଧ୍ୟୁଷିତ କଳାହାଣ୍ଡି ଜିଲ୍ଲାକୁ ବିଶ୍ୱଦରବାରରେ ଲଜ୍ଜିତ ହେବାକୁ ପଡ଼ିଥିଲା । ଆଲୋଚ୍ୟ ଦଣ୍ଡଧାରୀ ଉପନ୍ୟାସରେ ପ୍ରଚାରଧର୍ମୀ ମାନସିକତାକୁ ଲେଖକ ଆଦୌ ପ୍ରଶ୍ରୟ ଦେଇନାହାଁନ୍ତି । ବରଂ ବହୁ ପ୍ରାମାଣିକ ତଥ୍ୟ ବିବରଣୀ ତଥା ପ୍ରତ୍ୟକ୍ଷଦର୍ଶୀଙ୍କ ଅଙ୍ଗେନିଭା ଅନୁଭୂତିକୁ କଥାକାର ଗୁରୁତ୍ୱ ଦେଇଥିବାରୁ ଏହା ଏକ ପ୍ରାମାଣିକ ଓ ପ୍ରୟୋଗିକ ଉପନ୍ୟାସର ସମ୍ମାନ ଲାଭ କରିପାରିଛି । ଅବଶ୍ୟ ରଚନାଟିକୁ ପ୍ରାମାଣିକ କରିବାପାଇଁ ଲେଖକ କେତେକ ସ୍ଥଳରେ ସୂକ୍ଷ୍ମ ତଥ୍ୟ ଓ ବିବରଣୀର ଦୀର୍ଘ ବର୍ଣ୍ଣନା ଦେଇ କିଛି ମାତ୍ରାରେ କ୍ଳାନ୍ତିକର କରି ଦେଇଛନ୍ତି । ତଥାପି ଏହାର ବ୍ୟଙ୍ଗ ବିଦ୍ରୁପାତ୍ମକ ଶୈଳୀ ସେହି ଦୁର୍ବଳତାକୁ କେତେକାଂଶରେ ଦୂରକରି ସୁଖପାଠ୍ୟ କରାଇପାରିଛି ।

ଲେଖକଙ୍କ ଉକ୍ତ ଉପନ୍ୟାସରେ ପରିଦୃଷ୍ଟ ବ୍ୟାଙ୍ଗାତ୍ମକ ଶୈଳୀର ସଫଳ ପ୍ରୟୋଗ ଏଥିପୂର୍ବରୁ ୧୯୭୭ ମସିହାରେ ରଚିତ 'ପଶୁରାଇଜ' ଉପନ୍ୟାସ ମାଧ୍ୟମରେ ଓଡ଼ିଆ ପାଠକ ଅବଗତ ହୋଇସାରିଥିଲେ । ଦଣ୍ଡଧାରୀ ଭଳି 'ପଶୁରାଇଜ' ଉପନ୍ୟାସଟି ଯଦିଓ ଲେଖକଙ୍କ ମୌଳିକ ଉପନ୍ୟାସ ନୁହେଁ । ତଥାପି ଏଥିରେ ଯେଉଁଭଳି ଭାବେ ସମକାଳୀନ ଓଡିଶାର ରାଜନୀତିକ ଶାସନତନ୍ତ୍ରକୁ ନେଇ ରୂପକାତ୍ମକ ଶୈଳୀରେ ବ୍ୟଙ୍ଗବିଦ୍ରୁପ କରାଯାଇଛି । ସେଥିରୁ ଦାଶରଥି ନନ୍ଦଙ୍କ ଉଚ୍ଚାଙ୍ଗ ସାରସ୍ୱତ ପ୍ରତିଭାର ପରିଚୟ ମିଳିଥାଏ । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବିଶ୍ୱ ରାଜନୀତିକ ଶାସନତନ୍ତ୍ରରେ ପରିଲକ୍ଷିତ ଅଭାବନୀୟ ଦୂରବସ୍ଥାକୁ ଲକ୍ଷ୍ୟ କରି ୧୯୪୫ ମସିହାରେ ବିଶିଷ୍ଟ ଇଂରାଜୀ ସାହିତ୍ୟିକ ଜର୍ଜ ଆରୱେଲଙ୍କ ପଲିଟିକାଲ ସାଟାର ମୂଳକ ଉପନ୍ୟାସ 'ଏନିମଲ ଫାର୍ମ' (Animal-Farm) ଦ୍ୱାରା ପ୍ରଭାବିତ ହୋଇ ଔପନ୍ୟାସିକ ଶ୍ରୀନନ୍ଦ ଆଲୋଚ୍ୟ 'ପଶୁ ରାଇଜ' ଉପନ୍ୟାସ ରଚନା କରିଥିଲେ । ଲେଖକଙ୍କ ଏହି ଉପନ୍ୟାସଟି ଲୋକପ୍ରିୟ ଇଂରେଜ ଉପନ୍ୟାସର ଛାୟାରେ ରଚିତ ହୋଇଥିଲେ ମଧ୍ୟ ସ୍ଥାନ, କାଳ ଓ ଘଟଣା ଦୃଷ୍ଟିରୁ ଅନେକ ଭିନ୍ନତା ତଥା ମୌଳିକତା ସ୍ୱଷ୍ଟ ପରିଦୃଷ୍ଟ ହୁଏ । ଷ୍ଟାଲିନ ହିଟଲର, ମୁସୋଲିନ୍, ଟ୍ରୁଜିଲୋ, ତଥା ମାଓ-ସେ-ତୁଙ୍ଗ ଭଳି ଏକଛତ୍ରବାଦୀ ଶାସକଙ୍କ ଦମନନୀତି ତଥା ଦୁଇଦୁଇଟି ବିଶ୍ୱଯୁଦ୍ଧର ଭୟାବହ ପରିଣତି ବିଶ୍ୱ ରାଜନୀତି ଜଗତରେ ଯେଉଁଭଳି ଭାବେ ଆମୂଳଚୂଳ ପରିବର୍ତ୍ତନ ଆଣିଥିଲା । ତଦ୍ୱାରା ବିଶ୍ୱବାସୀ ସାମାଜିକ ଓ ରାଜନୀତିକ ସ୍ତରରେ ଅଳ୍ପ ବହୁତ ପ୍ରଭାବିତ ହୋଇଥିଲେ । ଏଭଳି ଏକ ବିସ୍ତୃତ ବିଶ୍ୱ ରାଜନୀତିକ ପ୍ରେକ୍ଷାପଟ୍ଟ ଉପରେ ଏନିମଲ ଫାର୍ମ ଉପନ୍ୟାସର ପରିକଳ୍ପନା କରାଯାଇଥିବାବେଳେ ପଶୁରାଇଜ ଉପନ୍ୟାସଟି ସ୍ୱାଧୀନ ଭାରତରେ ରାଜନୀତିକ ଦୂରାବସ୍ଥା, ରାଜନ୍ୟବର୍ଗଙ୍କ ସ୍ୱାର୍ଥପରତା ତଥା ସ୍ୱେଚ୍ଛାଚାରି ମାନସିକତା ଭଳି ଆଞ୍ଚଳିକ ପୃଷ୍ଠଭୂମି ଉପରେ ରଚିତ ହୋଇଛି । ଅବଶ୍ୟ ସ୍ୱାଧୀନ ଭାରତର ଗଣତନ୍ତ୍ର କ୍ଷେତ୍ରରେ ନିରଙ୍କୁଶ ଏକଛତ୍ରବାଦ ପରିଦୃଷ୍ଟ ହୋଇ ନାହିଁ ସତ, କିନ୍ତୁ ରାଜନୀତିକ ଆଦର୍ଶ ଓ

ମୂଲ୍ୟବୋଧ ଜନିତ ଅକଳ୍ପନୀୟ ସଂକଟ ଦେଖାଦେଇଛି । ପୂର୍ବରୁ ଭାରତୀୟମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ଭ୍ରାତୃଭାବ ନୀତିନିଷ୍ଠ ଜୀବନଚର୍ଯ୍ୟା ସୁଖ, ଶାନ୍ତି, ସମୃଦ୍ଧିର ରାମରାଜ୍ୟର ସ୍ୱପ୍ନ ପରିଲକ୍ଷିତ ହେଉଥିଲା, ସ୍ୱାଧୀନତା ପରେ ସେସବୁ ସତ୍ୱେ ଯେଭଳି ଆମ ପାଇଁ ଏକ ଏକ କଳ୍ପିତ ବସ୍ତୁରେ ରୂପାନ୍ତରିତ ହୋଇଗଲା । ଏ ଦେଶର ରାଜନୀତିକ ନେତୃବର୍ଗ ଜନସେବା ନାମରେ କ୍ଷମତା ସର୍ବସ୍ୱ ଗୋଷ୍ଠୀ ତଥା ବ୍ୟକ୍ତିକୈନ୍ଦ୍ରିକ ରାଜନୀତି ଭିତରେ ବୁଡ଼ି ରହିଲେ । ରାଷ୍ଟ୍ରୀୟ ବିକାଶକୁ ଗୌଣକରି ଯେ କୌଣସି ପ୍ରକାରେ କ୍ଷମତା ରୋଗ ପାଇଁ ସେମାନେ ପ୍ରୟାସୀ ହୋଇପଡ଼ିଲେ । ସ୍ୱାଧୀନତାର ଦ୍ୱିତୀୟ ଦଶନ୍ଧିବେଳକୁ ଏହି ପରିସ୍ଥିତି ଆହୁରି ଜଟିଳ ଓ ସଙ୍କଟାପର୍ଣ୍ଣ ହୋଇପଡୁଥିବା ଘଟଣାକୁ ଲକ୍ଷ୍ୟକରି କଥାକାର ରାଜନୈତିକ ବ୍ୟଙ୍ଗମୂଳକ କଥା ଗ୍ରନ୍ଥ ରଚନା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ପଶୁରାଇଜ କଥାକାରଙ୍କ ଏକ ଅନୁଦିତ ରୂପକାତ୍ମକ ଉପନ୍ୟାସ । ଏଥିରେ ପଶୁ ଓ ପକ୍ଷୀ ଚରିତ୍ରମାନଙ୍କ ମଧ୍ୟରେ ଔପନ୍ୟାସିକ ମାନବ ସମାଜରେ ଶାସନତନ୍ତ୍ରର ବିବର୍ତ୍ତନଧାରାକୁ ସୁନ୍ଦରଭାବେ ଦର୍ଶାଇଛନ୍ତି । ଏହି ଉପନ୍ୟାସରେ କଷ୍ଟଲବ୍ଧ ସ୍ୱାଧୀନତା କିଭଳି ଆତ୍ମକୈନ୍ଦ୍ରିକ ସ୍ୱେଚ୍ଛାଚାରିତା ଦ୍ୱାରା ବିପନ୍ନ ହୋଇପଡ଼େ, ତାର ମାର୍ମିକ ଚିତ୍ର ପଶୁଚରିତ୍ର ମାଧ୍ୟମରେ କଳାତ୍ମକ ରୂପଲାଭ କରିଛି। ଏପରି ଏକ ରୂପକାତ୍ମକ କଥାବସ୍ତୁ ମାଧ୍ୟମରେ ଲେଖକ ମାନବ ସଭ୍ୟତାରେ ଦେଖାଦେଇଥିବା ସର୍ବକାଳୀନ ଶାସନତନ୍ତ୍ରର ଆଦର୍ଶଗତ ପରିବର୍ତ୍ତନକୁ ଅତ୍ୟନ୍ତ ସଫଳତାର ସହିତ ବର୍ଣ୍ଣନା କରିଛନ୍ତି । ମଣିଷ ଏକ ସାମାଜିକ ପ୍ରାଣୀ । ତା'ର ସାମାଜିକ ଜୀବନକୁ ସୁବ୍ୟବସ୍ଥିତ ତଥା ଶୃଙ୍ଖଳିତ କରିବା ପାଇଁ ଏକ ଶାସନ କାଳର ଆବଶ୍ୟକତା ହୋଇଥାଏ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ରାଜନୀତି ଦର୍ଶନ ଅନୁସାରେ ମାନବ ସଭ୍ୟତାର ଶାସନତନ୍ତ୍ରଟି ସର୍ବଦା ପରିବର୍ତ୍ତନଶୀଳ । ଗୋଟିଏ ଶାସନତନ୍ତ୍ର ଯେତେବେଳେ ତା'ର ବୁଦ୍ଧି, ବିବେକ, ବିଚାର ତଥା ମୂଳ ଆଦର୍ଶରୁ ବିଚ୍ୟୁତି ହୋଇଯାଏ । ସେତେବେଳେ ସେହି ଶାସନ ବ୍ୟବସ୍ଥା ଏକଚ୍ଛତ୍ରବାଦୀ ହୋଇପଡ଼େ । ଫଳତଃ ସୃଷ୍ଟି ହୁଏ ତା ବିରୁଦ୍ଧରେ ବିପୁଳ ଜନ ଅସନ୍ତୋଷ ଓ ବିପ୍ଳବ । ସେହି ବିଦ୍ରୋହରୁ ଜନ୍ମନିଏ ପୁନଶ୍ଚ ଆଉ ଏକ ନୂତନ ଶାସନତନ୍ତ୍ର । ପ୍ରଜାପାଳନ ନାଁରେ ଶାସକମାନେ ପୁନଶ୍ଚ ଆରମ୍ଭ କରିଦିଅନ୍ତି ତାଙ୍କର ଶୋଷଣ ଓ ଦମନନୀତି । କେବଳ ସାଧାରଣ ଜନତା ଏହି ଶାସନକାଳର ଅଡୁଆସୁତା ମଧ୍ୟରେ ଛନ୍ଦି ହୋଇ ଆଉ ଏକ ମୁକ୍ତି ସଂଗ୍ରାମକୁ ଚାତକ ଭଳି ଚାହିଁ ବସନ୍ତି । ରାଜନୀତି ଦର୍ଶନର ଏହି ସାର୍ବଜନୀନ ସତ୍ୟ ହେଉଛି 'ପଶୁରାଇଜ' ଉପନ୍ୟାସର ଅନ୍ତଃସ୍ୱର । ପୂର୍ବାଲୋଚିତ ଉପନ୍ୟାସ ବ୍ୟତୀତ ୨୦୧୦ ମସିହାରେ 'ବର୍ତ୍ତିକା' ବାର୍ଷିକ ସଂଖ୍ୟାରେ ପ୍ରକାଶିତ 'କ୍ରୀଡ଼ନକ' ଉପନ୍ୟାସଟି ଲେଖକଙ୍କ ଆତ୍ମଜୀବନୀକୁ ଭିତ୍ତିକରି ରଚିତ ସପ୍ତମ କଥାଗ୍ରନ୍ଥ । ସଂପ୍ରତି ଓଡ଼ିଆ ଉପନ୍ୟାସର ଦୀର୍ଘ ପରମ୍ପରା ମଧ୍ୟରେ ବିଭିନ୍ନ ସ୍ୱାଦର ଉପନ୍ୟାସ ରଚିତ ହୋଇଛି । ଓଡ଼ିଆ କଥାଶିଳ୍ପୀମାନେ ଉଭୟ ଗୁଣାତ୍ମକ ଦୃଷ୍ଟିରୁ ଆମ ଉପନ୍ୟାସ ସାହିତ୍ୟକୁ ସୁସମୃଦ୍ଧ ମଧ୍ୟ କରିଛନ୍ତି । ଆତ୍ମଚରିତ ଧର୍ମୀ ଉପନ୍ୟାସ ରଚନା କ୍ଷେତ୍ରରେ ସେଭଳି କୌଣସି ଉଲ୍ଲେଖନୀୟ କୃତି ପରିଲକ୍ଷିତ ହୁଏନାହିଁ । ଏହି ପରିପ୍ରେକ୍ଷୀରେ ଦାଶରଥି ନନ୍ଦଙ୍କ 'କ୍ରୀଡ଼ନକ' ଉପନ୍ୟାସଟି ସେହି ଅଭାବବୋଧର ପରିପୂରଣ ନିମନ୍ତେ ସହାୟକ ହେବ ବୋଲି ଆମର ଆଶା । ଦାଶରଥି ନନ୍ଦଙ୍କ ସୃଷ୍ଟିଶ୍ରାବୀ ସୃଜନ ପ୍ରତିଭା ଗତ ତିନିଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଧରି ନିରବଚ୍ଛିନ୍ନ ସାହିତ୍ୟ ସାଧନା କରି ଆସିଛି । ପରିମାଣାତ୍ମକ ଦୃଷ୍ଟିରୁ ତାଙ୍କ କଥାଜଗତ ବିପୁଳାୟତନ ନ ହେଲେ ମଧ୍ୟ ଗୁଣାତ୍ମକ ଦୃଷ୍ଟିକୋଣରୁ ଏକ ନୂତନ ପରମ୍ପରାର ବାର୍ତ୍ତାବହ ହୋଇପାରିଛି । ଶୈଳୀ ଦ୍ୱାରା ହିଁ ସ୍ରଷ୍ଟା ତାର ସ୍ୱାତନ୍ତ୍ରୀୟ ପ୍ରତିଷ୍ଠା କରିଥାଏ । ଏହି ମର୍ମରେ ଶ୍ରୀନନ୍ଦଙ୍କ ଉପନ୍ୟାସ ରଚନାଶୈଳୀ ପ୍ରଚଳିତ ଓଡ଼ିଆ ଉପନ୍ୟାସ ଧାରାରେ ଏକ ନିଆରା ପରମ୍ପରା ସୃଷ୍ଟି କରିଛି । ନିଜ ଉପନ୍ୟାସଗୁଡ଼ିକର ଭାବଭୂମି ପରିକଳ୍ପନା କ୍ଷେତ୍ରରେ କଥାକାର ଯେଉଁଭଳି ଭାବେ ଅଭିନବତା ପ୍ରଦର୍ଶିତ କରିଛନ୍ତି, ତାହା ବାସ୍ତବରେ ତାଙ୍କ ସ୍ୱତନ୍ତ୍ର କଥା କାରିଗରୀର ପରିଚୟ ବହନ କରେ । 'ଏଇ ପଥ' ଉପନ୍ୟାସଠାରୁ ଆରମ୍ଭ କରି 'କ୍ରୀଡ଼ନକ' ପର୍ଯ୍ୟନ୍ତ ପ୍ରତିଟି କଥାଗ୍ରନ୍ଥରେ ସେହି ନିଆରା ପଣିଆକୁ ସ୍ପଷ୍ଟ ଅନୁଭବ କରିହୁଏ । କଥାକାର ନିଜ କୃତି ସମୂହ ମଧ୍ୟରେ ବୈଚିତ୍ର୍ୟହୀନ ସାଧାରଣ ପ୍ରେମପ୍ରଣୟକୁ ତଥା ମନୁଷ୍ୟର ଜାନ୍ତବ ପ୍ରବୃତ୍ତିକୁ ମୂଳାଧାର ଭାବରେ ଗ୍ରହଣ କରି ନାହାଁନ୍ତି । ଅଧିକନ୍ତୁ ସେ ସମସାମୟିକ ଜଟିଳ ଜୀବନର ପ୍ରାକୃତିକ, ଭୌତିକ ସାମାଜିକ, ରାଜନୈତିକ ଏବଂ ଆବେଗିକ ସମସ୍ୟାର ସ୍ୱରୂପ ପ୍ରକଟ ଓ ତା'ର ସମାଧାନ ପାଇଁ ଉପନ୍ୟାସକୁ ପରୀକ୍ଷାର କ୍ଷେତ୍ର ରୂପେ ବାଛି ନେଇଛନ୍ତି । ଚରିତ୍ର ଚିତ୍ରଣ ଦୃଷ୍ଟିରୁ ଶ୍ରୀନନ୍ଦଙ୍କ ଉପନ୍ୟାସଗୁଡ଼ିକ ପ୍ରଚଳିତ ଧାରାଠାରୁ କେତେକାଂଶରେ ଭିନ୍ନ ମନେ ହୁଏ । ତାଙ୍କ ଉପନ୍ୟାସରେ କୌଣସି ଚରିତ୍ର ନାୟକନାୟିକା ଭାବେ ଚିତ୍ରିତ ହୋଇନାହାନ୍ତି। ବରଂ ସାମାଜିକ ପରିସ୍ଥିତି ଓ ଘଟଣା ହିଁ ପ୍ରମୁଖ ଭୂମିକା ଗ୍ରହଣ କରିଛି । ତେଣୁ ତାଙ୍କ କଥାଶିଳ୍ପରେ ଚରିତ୍ରଗୁଡ଼ିକର ବଳିଷ୍ଠ ବିକାଶ ଦେଖାଯାଏନାହିଁ । ଏମାନେ ଘଟଣାର ବ୍ୟକ୍ତି ଓ ପରିମିତତା ଦୃଷ୍ଟିରୁ ହିଁ ବର୍ତ୍ତିତ ହୋଇଛି । ନେତା, ମନ୍ତ୍ରୀ, ଡାକ୍ତର, ଯନ୍ତ୍ରୀ, ଶ୍ରମିକ, କୃଷକଙ୍କ ଭଳି ସବୁଧରଣର ଚରିତ୍ର ତାଙ୍କ ଉପନ୍ୟାସରେ ଅଛନ୍ତି ସତ କିନ୍ତୁ ସେମାନେ ସମାଜର ବିଭିନ୍ନ ବର୍ଗର ପ୍ରତିନିଧିତ୍ୱ କରିଛନ୍ତି । ନନ୍ଦଙ୍କ ଉପନ୍ୟାସ ଗୁଡ଼ିକରେ ନାରୀ ଚରିତ୍ରର ଅଭାବ ସ୍ପଷ୍ଟ ମନେହୁଏ । ନାରୀ ଚରିତ୍ର ଚିତ୍ରଣ କ୍ଷେତ୍ରରେ ଲେଖକ ଉଦାସୀନ ତାହା ଜାଣି ହୁଏ ନାହିଁ । କିନ୍ତୁ ପ୍ରକୃତିକୁ ଜୀବନ୍ତ ଚରିତ୍ର ଭାବରେ ଉପସ୍ଥାପିତ କରି ଓଡ଼ିଆ ଉପନ୍ୟାସ ପରମ୍ପରାରେ ଏକ ସ୍ୱତନ୍ତ୍ର ଆଦର୍ଶ ପ୍ରତିଷ୍ଠା କରିପାରିଛନ୍ତି । ଅଧିକାଂଶ ଉପନ୍ୟାସର ଆରମ୍ଭରୁ ଶେଷଯାଏ ପ୍ରକାଶ୍ୟରେ ବା ପ୍ରଚ୍ଛନ୍ନରେ ସ୍ୱୟଂ ଲେଖକ ହିଁ ଏକ ସୂଚକ ଚରିତ୍ର ଭାବେ ଆତ୍ମପ୍ରକାଶ କରି କଥାଭୂମିକୁ ସୂତ୍ରଧାର ଭଳି ନିୟନ୍ତ୍ରିତ କରିଛନ୍ତି । ଅଣପାରମ୍ପରିକ ଚରିତ୍ର ଚିତ୍ରଣ କ୍ଷେତ୍ରରେ ଶ୍ରୀନନ୍ଦ ଏକ ସ୍ୱତନ୍ତ୍ର ଆଦର୍ଶ ପ୍ରତିଷ୍ଠା କରିଯାଇଛନ୍ତି । ତାଙ୍କ ଘଟଣା ଓ ପରିବେଶ ବର୍ଣ୍ଣନା ଦୃଷ୍ଟିର ଉପନ୍ୟାସଗୁଡ଼ିକ ଖୁବ ବାସ୍ତବ ଓ ଜୀବନ୍ତ ମନେହୁଏ । ଯେକୌଣସି ପରିବେଶ ଓ ପରିସ୍ଥିତିକୁ ବର୍ଣ୍ଣନା କଲାବେଳେ ଲେଖକ ସର୍ବଦା ତା'ର ପ୍ରାମାଣିକ ତଥା ବାସ୍ତବ ଦିଗ ପ୍ରତି ଖୁବ୍ ସଚେତନ ଭାବେ ଲେଖନୀଚାଳନା କରିଛନ୍ତି । ଅବଶ୍ୟ ଉପନ୍ୟାସଗୁଡ଼ିକ ବାସ୍ତବଧର୍ମୀ କରାଇବା ପାଇଁ ଲେଖକ କେତେକ ସ୍ଥଳରେ ବିରକ୍ତିକର ସୂକ୍ଷ୍ମ ବିବରଣୀଗୁଡ଼ିକକୁ ବର୍ଣ୍ଣନା କରିଯାଇଛନ୍ତି । ଯଦ୍ୱାରା ଉପନ୍ୟାସଗୁଡ଼ିକର କଳାତ୍ମକ ପକ୍ଷ କିଛି ମାତ୍ରାରେ ଦୁର୍ବଳ ହୋଇପଡ଼ିଛି । ବେଳେବେଳେ ତାଙ୍କ ଉପନ୍ୟାସର ଘଟଣା ଓ ପରିବେଶର ଅନାବଶ୍ୟକ ବର୍ଣ୍ଣନାକୁ ଅନୁଭବ କରିହୁଏ । କିନ୍ତୁ ବିଷୟବସ୍ତୁ ବର୍ଣ୍ଣନାରେ ସମୟ ସଚେତନାତା, ଜୀବନର ବାସ୍ତବ ସତ୍ୟକୁ ଉନ୍ମୋଚନ କରିବାପାଇଁ ଅଭିନବ ପ୍ରବଣତା ତଥା ଉପନ୍ୟାସର ବକ୍ତବ୍ୟରେ ସାକାରାତ୍ମକ ଦୃଷ୍ଟିକୋଣ ସେହି ସକଳ ଦୁର୍ବଳତାକୁ ସତେ ଯେଭଳି ନିଷ୍ପ୍ରଭ କରିପକାଇଛି । ଉପନ୍ୟାସର ବର୍ଣ୍ଣିତ ବିଷୟରେ ନାଟକୀୟ ଚମତ୍କାରିତା ସୃଷ୍ଟି ଶ୍ରୀନନ୍ଦ କଥା କାରିଗରୀର ଆଉ ଏକ ବିଶେଷତ୍ୱ । ଚରିତ୍ରମାନଙ୍କ ଦ୍ୱାରା ବାର୍ତ୍ତାଳାପଶୈଳୀରେ ଲେଖକ ବର୍ଣ୍ଣିତ ବିଷୟବସ୍ତୁକୁ ଉପସ୍ଥାପିତ କରି ଏକ ପ୍ରକାର ବାଚିତ ଅଭିନୟର ପରିବେଶ

ସୃଷ୍ଟି କରିଛନ୍ତି । ଯାହା ତାଙ୍କ ଉପନ୍ୟାସଗୁଡ଼ିକକୁ ସୁଖ ପାଠ୍ୟ କରାଇବାରେ ସହାୟକ ହୋଇଛି । ଉପନ୍ୟାସରେ ହାସ୍ୟ ଓ ବ୍ୟଙ୍ଗ ଶୈଳୀର ଅନୁସରଣ ତାଙ୍କ ଆଉ ଏକ ପ୍ରମୁଖ ଶିଳ୍ପୀରୀତି ଦୃଷ୍ଟିକୁ ବୈଚିତ୍ର୍ୟମଣ୍ଡିତ କରିବା ପାଇଁ ଉଦ୍ୟମ କରିଥାଏ ।

ଲେଖକ ନିଜ ବକ୍ତବ୍ୟକୁ ପାଠକ ସମ୍ମୁଖରେ ସିଧାସଳଖ ଉପସ୍ଥାପନା କରିବା ଅପେକ୍ଷା ସାମାନ୍ୟ ହାସ୍ୟ ସହିତ ତୀର୍ଯ୍ୟକ୍ ରୀତିରେ ବ୍ୟକ୍ତକଲେ ତାହା ଅଧିକ ବୈଚିତ୍ର ପୂର୍ଣ୍ଣ ହୋଇଥାଏ । ତେଣୁ ଔପନ୍ୟାସିକ ତାଙ୍କ ଅଧିକାଂଶ ଉପନ୍ୟାସରେ ଏହି ଶୈଳୀର ସଫଳ ପ୍ରୟୋଗ କରିଛନ୍ତି । ବିଶେଷକରି ଯେଉଁ 'ଦଣ୍ଡଧାରୀ' ଓ 'ପଶୁରାଇଜ' ଏହି ହାସ୍ୟ ଓ ବ୍ୟଙ୍ଗ ଶୈଳୀରେ ରଚିତ ଦୁଇଟି ସଫଳ ଉପନ୍ୟାସ ବକ୍ତବ୍ୟକୁ ସ୍ପଷ୍ଟ କରିବା ପାଇଁ 'ପସୁରାଇଜ' ଉପନ୍ୟାସରୁ ଗୋଟିଏ ଦୃଷ୍ଟାନ୍ତକୁ ଲକ୍ଷ୍ୟ କରନ୍ତୁ - "ବନ୍ଧୁଗଣ" । ବୃଦ୍ଧ ଶୂକର କହିଲା, "ବର୍ତ୍ତମାନ ଗୋଟିଏ ବିଷୟ ସ୍ଥିର କରିବାକୁ ପଡ଼ିବ । ମୂଷା ପରି ହିଂସ୍ର ଜନ୍ତୁମାନେ ଆମର ବନ୍ଧୁ ନା ଶତ୍ରୁ? ଏଥିପାଇଁ ଭୋଟ ନିଆଯାଉ ମୁଁ ବର୍ତ୍ତମାନ ଉପସ୍ଥିତ ବନ୍ଧୁମାନଙ୍କ ସମ୍ମୁଖରେ ଗୋଟିଏ ପ୍ରଶ୍ନ ଉତ୍ଥାପନ କରୁଛି; ମୂଷାମାନେ ଆମ୍ଭର ବନ୍ଧୁ କି? ସଙ୍ଗେ ସଙ୍ଗେ ଭୋଟ ନିଆଗଲା । ବହୁ ଭୋଟରେ ଗୃହୀତ ହେଲା ଯେ ମୂଷାମାନେ ମିତ୍ର ଅଟନ୍ତି । ତିନିଟି କୁକୁର ଓ ଗୋଟିଏ ବିଲେଇ ଏପରି ଚାରିଜଣ କେବଳ ଭିନ୍ନମତ ପ୍ରଦାନ କଲେ । ପରେ ଜଣା ପଡ଼ିଲା ଯେ ବିରାଡ଼ି ଉଭୟଆଡେ ଭୋଟ ଦେଇଛି।" (ରଚନା ସମଗ୍ର, ପୃ-୩୩୨) 'ଏଇପଥ' 'ଦଣ୍ଡଧାରୀ' ତଥା 'କ୍ରୀଡ଼ନକ' ଭଳି ଉପନ୍ୟାସଗୁଡ଼ିକରେ ଏହି ଶୈଳୀର ସାର୍ଥକ ବ୍ୟବହାର କରାଯାଇଛି । ସହଜ ସରଳ ଓ ସାବଲୀଳ ଭାଷାର ପ୍ରୟୋଗ ଦ୍ୱାରା ତାଙ୍କ ଉପନ୍ୟାସଗୁଡ଼ିକ ସୁବୋଧ ହୋଇପାରିଛି । ସାଧାରଣ ଲୌକିକ ତଥା ଆଦିବାସୀ ଭାଷାର ବ୍ୟବହାର ଠାରୁ ଆରମ୍ଭ କରି ଆଭିଜାତ୍ୟ ଶ୍ରେଣୀର ଭାଷା ପର୍ଯ୍ୟନ୍ତ ବିଭିନ୍ନ ଧରଣର ଭାଷା ଆମେ ତାଙ୍କ ଉପନ୍ୟାସରେ ବ୍ୟବହୃତ ହୋଇଥିବା ଦେଖିବାକୁ ପାଇବା । ଏହାଛଡ଼ା ବାକ୍ୟଗଠନ କୌଶଳ ଓ ଶବ୍ଦ ପ୍ରୟୋଗ ଚାତୁରୀ ତାଙ୍କ ଉପନ୍ୟାସର ଆଙ୍ଗିକ ସୌଷ୍ଠବକୁ ଉତ୍କର୍ଷ ପ୍ରଦାନ କରିଛି। ଅତଏବ ଔପନ୍ୟାସିକ ଦାଶରଥି ନନ୍ଦଙ୍କ ରଚନାଗୁଡ଼ିକରେ ଆତ୍ମିକ ବିଭବ ଯେଉଁଭଳି ସର୍ବଦା ଅଭିନବ ସୌନ୍ଦର୍ଯ୍ୟରେ ରସାଣୀତ ଠିକ୍ ସେହିଭଳି ସେଗୁଡ଼ିକର ଆଙ୍ଗିକ ଗଠନ କୌଶଳ ଖୁବ୍ ବୈଚିତ୍ରପୂର୍ଣ୍ଣ । ଜୀବନର ଅପରାହ୍ଣରେ ଉପନୀତ ଏହି ସୃଷ୍ଟିଶୀଳ ସ୍ରଷ୍ଟାଙ୍କ ସାହିତ୍ୟକ କୃତିକୁ ଏକ କ୍ଷୁଦ୍ର ପ୍ରବନ୍ଧର କଳେବର ମଧ୍ୟରେ ଆକଳନ କରିବା ଆଦୌ ସମ୍ଭବ ନୁହେଁ । ଏ ଦିଗଟି ବ୍ୟାପକ ଗବେଷଣା ଓ ଆଲୋଚନା କରାଗଲେ, ତାଙ୍କ ସୃଷ୍ଟି ସମ୍ଭାରରେ ଅନେକ ଅନାଲୋଚିତ ଦିଗ ଉନ୍ମୋଚିତ ହୋଇପାରିବ ।

**ସହାୟକ ଗ୍ରନ୍ଥସୂଚୀ**


୧. ଦାଶରଥି ନନ୍ଦ, ଉପନ୍ୟାସ ସମଗ୍ର

୨. ଲାବଣ୍ୟ ନାୟକ, ଉପନ୍ୟାସ ସାହିତ୍ୟ ସମ୍ପର୍କରେ ପୁସ୍ତକ ଭଣ୍ଡାର, ବ୍ରହ୍ମପୁର-୧, ୧୯୩୬

୩. ବାଉରୀବନ୍ଧୁ କର, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ, ବିଦ୍ୟାପୁରୀ କଟକ,୨୦୦୪

୪. ସନ୍ତୋଷ ତ୍ରିପାଠୀ, ଓଡ଼ିଆ ଉପନ୍ୟାସ ସମ୍ପର୍କରେ, ନାଳନ୍ଦା କଟକ-୧୯୯୩

୫. ପଠାଣି ପଟ୍ଟନାୟକ, ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ଓଡ଼ିଆ ବୁକ୍‌ଷ୍ଟୋର

୬. ଦାଶରଥି ଆଚାର୍ଯ୍ୟ, କଥାଶିଳ୍ପୀ ଦାଶରଥି ନନ୍ଦ, ସାରସ୍ୱତ ବର୍ତ୍ତିକା ପ୍ରକାଶନ ପରିଷଦ, ଯାଜପୁର ୨୦୧୨